# ଶୁଦ୍ଧବର୍ଣ୍ଣ ଚନ୍ଦ୍ରିକା

ସୀତାନାଥ ଆଚାର୍ଯ୍ୟ

# ଭୂମିକା ।

ଗ୍ରହବିପ୍ର ଯେ ବିଶୁଦ୍ଧ ବ୍ରାହ୍ମଣ ଏସମ୍ବନ୍ଧରେ ବିଶେଷ ପ୍ରମାଣ ହୁଅନ୍ତି । କିନ୍ତୁ ଏମାନେ ସୂର୍ଯ୍ୟାଂଶ ବ୍ରାହ୍ମଣଙ୍କଠାରୁ ପୃଥକ୍ ଏବଂ ହାଂଶ ବ୍ରାହ୍ମଣ ବୋଲି ପରିଚିତ । ଅସ୍ମରଣୀୟ କାଳରୁ ର୍ବ ଭାରତର ଗୃହରେ ପୁରୋହିତ ବ୍ରାହ୍ମଣ ଓ ଗ୍ରହବିପ୍ର ଏକତ୍ରରେ ଶୁଭ କାର୍ଯ୍ୟ ସମ୍ପନ୍ନ କରି ଆସୁଅଛନ୍ତି । ବିଶେଷତଃ ବେଦାଙ୍ଗ ଜ୍ୟୋତିଷବିଦ୍ୟାରେ ପାଣ୍ଡିତ୍ୟ ଥିବାରୁ ଜନସାଧାରଣ ପ୍ରତ୍ୟେକ ର୍ଯ୍ୟରେ ଗ୍ରହବିପ୍ରଙ୍କର ପରାମର୍ଶ ଗ୍ରହଣ କରି ଆସୁଅଛନ୍ତି ଏବଂ ଯଜନ ାଜନାଦି ବ୍ରାହ୍ମଣୋଚିତ କର୍ମ ଗ୍ରହବିପ୍ରଙ୍କର ଜାତିଗତ ସମ୍ପଦ, ଣୁ ପବିତ୍ର ସ୍ଥାନମାନଙ୍କରେ ବିଶେଷ ସମ୍ମାନିତ ହୋଇଆନ୍ତି । ହି ବଂଶମାନେ ଭାରତର ପ୍ରସିଦ୍ଧସ୍ଥାନ ବଙ୍ଗ, କାଶୀ ପ୍ରଭୃତିରେ ଶାକଦ୍ୱୀପୀ ବ୍ରାହ୍ମଣ” ବୋଲି ବିଖ୍ୟାତ । ଏହିପରି ଗୁଣର ଦର ବା ସମ୍ମାନ ସର୍ବତ୍ର ହେବା ଉଚିତ କିନ୍ତୁ ପୁରୋହିତ ାହ୍ମଣ ଓ ଗ୍ରହବିପ୍ର ଜାତି ଉଭୟଙ୍କ ମଧ୍ୟରେ ଦେଖା ପାଉନା-ପଣ ଯଜମାନ ଦ୍ୱାରରେ ସମୟ ସମୟରେ ଗୋଳମାଳ ପସ୍ଥିତ ହୁଏ । ସେ ସ୍ଥାନରେ ପୁରୋହିତ ବ୍ରାହ୍ମଣମାନେ ପ୍ରତାରଣା ଉଦ୍ଭାବନ କରନ୍ତି,—ଯଦ୍ଦ୍ୱାରେ କି ଗ୍ରହବିପ୍ରମାନେ ଅଂଶ ପାଇବାରୁ ବଞ୍ଚିତ ହେବେ । ଏପରି ଯେହୁ ଯାଜକ-ମ୍ୟକପାତ୍ରୀ ବ୍ରାହ୍ମଣମାନଙ୍କ ଈର୍ଷାନ୍ୱିତ କୁଣିଷାରେ ମଧ୍ୟ ସାଧାରଣ ଯଜମାନମାନେ ପଡ଼ିଯାନ୍ତି । ଏହା ଦେଖି ମୋର ଇଚ୍ଛା ହେବାରୁ ଗ୍ରହବିପ୍ରଙ୍କ ସମ୍ବନ୍ଧରେ ତାତ୍ତ୍ୱିକ ଆଲୋଚନା କରିବାରେ ପ୍ରବୃତ୍ତ ହେଲି, ଯଦ୍ଦ୍ୱାରା ସାଧାରଣଙ୍କର ସନ୍ଦେହ

ଦୃଷ୍ଟିଗୋଚର ହେବ । ସୁତରାଂ ଯେଉଁମାନେ ଆମକୁ ଶୁଦ୍ର ବୋଲି ପ୍ରଚାର କରନ୍ତି, ସେମାନେ ଶାସ୍ତ୍ରମାନ ଦେଖନ୍ତୁ ; ତାହା ଦେଖିଲେ କର୍ମକାଣ୍ଡରୁ ବହୁଳ ହୁଏ । ଏ ବିଷୟ ଶାସ୍ତ୍ରରୁ ବହୁତ ପ୍ରମାଣ ଉଦ୍ଧୃତ ହୋଇଅଛି । ସମସ୍ତେ ଯେପରି ଗ୍ରହବିପ୍ର ଜାତି ସମ୍ବନ୍ଧରେ ମୌଳିକତତ୍ତ୍ୱ ଓ ଇତିହାସ ବୁଝିପାରିବେ, ଆଉ ବୃଥାତର୍କ କରିବେ ନାହିଁ, ତାହାର ଉପାୟ ସ୍ୱରୂପ ଏହି "ଗ୍ରହବିପ୍ର ଚନ୍ଦ୍ରିକା" ନାମକ କ୍ଷୁଦ୍ର ପୁସ୍ତିକାଖଣ୍ଡି ସମ୍ପାଦିତ କଲି ।

ଏ ପୁସ୍ତକ ସଙ୍କଳନ ସମୟରେ ଶ୍ରୀ ନଗେନ୍ଦ୍ରନାଥ ବସୁଙ୍କ ପ୍ରଣୀତ "ବ୍ରାହ୍ମଣକାଣ୍ଡ" ଏବଂ ଶ୍ରୀ ଅଶ୍ୱଘୋଷ ଜେନାଙ୍କ ପ୍ରଣୀତ "ଆଚାର୍ଯ୍ୟ ବ୍ରାହ୍ମଣ" ପୁସ୍ତକରୁ ଅନେକ ସାହାଯ୍ୟ ପାଇଅଛି । ଶ୍ରୀ କୃତ୍ତିବାସ ଜ୍ୟୋତିର୍ଭୂଷଣ ଓ ଶ୍ରୀ ରମେଶଚନ୍ଦ୍ର ଶାସ୍ତ୍ରୀ ମହାଶୟ ସହାୟତା କରିଥିବାରୁ ଏଥିରେ ମୋର ଶ୍ରମଲାଘବ ହୋଇଅଛି । ଗ୍ରହବିପ୍ର ସମାଜରେ ଏପରି ଉତ୍ସାହୀ ବ୍ୟକ୍ତି ଅତ୍ୟଳ୍ପ ଏବଂ ଅନେକେ ଅଶିକ୍ଷିତ ଓ ନିର୍ଧନୀ, ଏହା ଅବନତିର ପ୍ରଧାନ କାରଣ ଅଟେ ।

ଉପସଂହାରରେ ବକ୍ତବ୍ୟ ଏହି ଯେ, ମାନବର କାର୍ଯ୍ୟ ଭ୍ରମସଙ୍କୁଳ, ସୁତରାଂ ଏ ପୁସ୍ତକରେ ଭାଷାଗତ ଦୋଷ ବା ଅନ୍ୟ ଭ୍ରମଥିଲେ ଦୂରଦର୍ଶୀ ବିଜ୍ଞପାଠକମାନେ ଅନୁଗ୍ରହ ପୂର୍ବକ ଜଣାଇଲେ ତାହା ୨ୟ ସଂସ୍କରଣରେ ଅବଶ୍ୟକମତେ ସଂଶୋଧିତ ହେବ । ଇତ୍ୟଲଂ ବିସ୍ତରେଣ ।

ବୋମାରଡଙ୍ଗା,<br>ବାଲେଶ୍ୱର ।

ନିବେଦକ<br>ଶ୍ରୀ ସୀତାନାଥ ଆଚାର୍ଯ୍ୟ ।

# ସୂଚୀପତ୍ର ।

ଓଁ ନମଃ ଶ୍ରୀସୂର୍ଯ୍ୟାୟ ।

# ଗ୍ରହବିପ୍ର ଚନ୍ଦ୍ରିକା ।

## ପ୍ରଥମ ଅଧ୍ୟାୟ ।

### ମଙ୍ଗଳାଚରଣ ।

"ଅଖଣ୍ଡଂ ସଚ୍ଚିଦାନନ୍ଦମବାଙ୍ମନ ସଗୋଚରଂ ।
ଆତ୍ମାନମଖିଳାଧାରମାଶ୍ରୟେଽଭୀଷ୍ଟସିଦ୍ଧୟେ ।" ୧ ।

ଯଚ୍ଚକ୍ଷୁରେଷ ସବିତା ସକଳଗ୍ରହାଣାଂ,
ରାଜା ସମସ୍ତମୂର୍ତ୍ତିରଶେଷତେଜାଃ ।
ଯସ୍ୟାଜ୍ଞୟା ଭ୍ରମତି ସମ୍ଭୃତ କାଳଚକ୍ରୋ,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । ୨ ।

ଓଁ ସୂର୍ଯ୍ୟ ପରମୋ ବ୍ରହ୍ମା ସୂର୍ଯ୍ୟଃ ପରମଃଶିବଃ ।
ଶ୍ରୀସୂର୍ଯ୍ୟଃ ପରମୋବିଷ୍ଣୁ ସ୍ତସ୍ମୈ ଶ୍ରେୟୋ ବ୍ରହ୍ମଣେ ନମଃ ।୩

ମୂର୍ତ୍ତିତ୍ରୈ ପରିକଳ୍ପିତଃ ଶଶଭୃତୋ ବର୍ତ୍ମା ପୁନର୍ଜନ୍ମନା-
ମାତ୍ମେତ୍ୟାତ୍ମବିଦାଂ କ୍ରତୁଶ୍ଚ ଯଜତାଂ ଭର୍ତ୍ତାମରଜ୍ୟୋତିଷାମ୍ ।
ଲୋକାନାଂ ପ୍ରଳୟୋଦ୍ଭବସ୍ଥିତିବିଭୁଶ୍ଚାନେକଧା ଯଃ ଶ୍ରୁତୌ
ବାଚନ୍ନଃ ସଦଦାତ୍ୱନେକକିରଣସ୍ତ୍ରୈଲୋକ୍ୟଦୀପୋ ରବିଃ । ୪ ।

ବନ୍ଦେ ଗୁରୁଂ ତ୍ରିଜଗଦୀଶମପେତ ଦୋଷଂ
ଭୂତୋଦ୍ଭବ ଭୁବନ ଭବ୍ୟ ଭବ ରବଃ ।
ମନ୍ୱାଦୟୋ ମୁନିଗଣାମନୁକାଣ୍ଡ ବନ୍ଦ୍ୟାଃ
ଯେଷାଂ ବଚେ ଭବତି ଧର୍ମ୍ମବିଧୌ ପ୍ରମାଣମ୍ । ୫ ।

## ଜାତିଚତୁଷ୍ଟୟର ଉତ୍ପତ୍ତି ।

ବ୍ରାହ୍ମଣୋଽସ୍ୟ ମୁଖମାସୀତ୍ ବାହୂ ରାଜନ୍ୟଃ କୃତଃ ।
ଉରୁ ଯଦସ୍ୟ ତଦ୍ବୈଶ୍ୟଃ ପଦ୍ଭ୍ୟାଂ ଶୂଦ୍ରୋଽଜାୟତଃ ।
(ଋଗ୍‌ବେଦ ପୁରୁଷସୂକ୍ତ ।)

ଅର୍ଥ ।—ବିରାଟ୍ ପୁରୁଷଙ୍କ ମୁଖରୁ ବ୍ରାହ୍ମଣ, ବାହୁରୁ କ୍ଷତ୍ରିୟ, ଉରୁଦ୍ୱୟରୁ ବୈଶ୍ୟ ଏବଂ ଚରଣଦ୍ୱୟରୁ ଶୂଦ୍ରଜାତି ଉତ୍ପନ୍ନ ହୋଇଥିଲେ ।

ଅହୋ ପ୍ରଜାପତେ ର୍ଜାତା ମୁଖାଦ୍ ବିପ୍ରାଃ ସଦାଗତାଃ ।
ବାହୋଶ୍ଚ କ୍ଷତ୍ରିୟା ଜାତା ଉର୍ବୋର୍ବୈଶ୍ୟା ବିଜଜ୍ଞିରେ ।
ପାଦାଚ୍ଛୂଦ୍ରଶ୍ଚ ସମ୍ଭୂତ ସ୍ତ୍ରିବର୍ଣ୍ଣସ୍ୟ ଚ ସେବକଃ । (ଅଗ୍ନିପୁରାଣ)

ଅର୍ଥ ।—ମନୁଷ୍ୟ ସୃଷ୍ଟିର ପ୍ରଥମରେ ପ୍ରଜାପତିଙ୍କ ମୁଖରୁ ସତ୍ତ୍ୱୀକ ବିପ୍ର, ବାହୁଦ୍ୱୟରୁ କ୍ଷତ୍ରିୟ, ଉରୁଦ୍ୱୟରୁ ବୈଶ୍ୟ ଏବଂ ଚରଣଦ୍ୱୟରୁ ତ୍ରିବର୍ଣ୍ଣ ସେବକ ଶୂଦ୍ରଜାତିର ଉତ୍ପତ୍ତି ହୋଇଅଛି ।

ଏଥିରୁ ବୁଝାଗଲା ଯେ ବ୍ରାହ୍ମଣାଦି ବର୍ଣ୍ଣଚତୁଷ୍ଟୟ ଏକ ବିରାଟ୍ ପୁରୁଷଙ୍କର ଅବୟବ ଅଟନ୍ତି, ସମସ୍ତେ ଏକଶରୀରାନ୍ତର୍ଗତ ହେତୁ ଅପୃଥକ୍ ଅଟନ୍ତି । ହାତ, ଗୋଡ଼ ମୁଣ୍ଡପରି ଏକଶରୀର-ପାଇଁ ଉଦ୍ୟତ ।

---

## ଗ୍ରହବିପ୍ରଙ୍କର ଉତ୍ପତ୍ତି ।

ବ୍ରହ୍ମାଙ୍କ ମୁଖରୁ ବ୍ରାହ୍ମଣ ଜାତିର ଉତ୍ପତ୍ତି ହୋଇଅଛି । ମାତ୍ର ଗ୍ରହବ୍ରାହ୍ମଣ ବା ଗ୍ରହବିପ୍ରର ଉତ୍ପତ୍ତି ଯେ ସେହି ବ୍ରହ୍ମାଙ୍କ ମୁଖରୁ ହୋଇଅଛି (ତାହାର ନିଦର୍ଶନ କଅଣ ? ଏହି ପ୍ରଶ୍ନ କେହି ଉତ୍ଥାପନ କରିପାରନ୍ତି) । ସାମବେଦୀୟ ଜ୍ୟୋତିଃଶାଖାର ଅନ୍ତର୍ଗତ ବ୍ରହ୍ମସିଦ୍ଧାନ୍ତ ଗ୍ରନ୍ଥରେ ପ୍ରମାଣ ଅଛି, ଯଥାଃ—

"ସହସ୍ରଶୀର୍ଷା ପୁରୁଷଃ ସର୍ବତୋ ଭୂମିଂ ସୃଷ୍ଟ୍ୱା ଉତ୍କଳାନ୍ତ୍ୟେ ତଂ ତୀର୍ଥ୍ୟର୍କାଦ ପ୍ରକାଶତଃ ସପାଦଶତଂ ମୁଖତୋ ଉତ୍କଳାଶେ-ଷ ଋଗ୍‌ବେଦୀ ଉତ୍କଳବ୍ରାହ୍ମଣାନ୍ ସାମଗାନାଂଶ୍ଚ ନବଗୋତ୍ରାନ୍ ବାତ୍ସ୍ୟ, ମୌଦ୍ଗଲ୍ୟ, କାଶ୍ୟପ, ପରାଶର, ଭରଦ୍ୱାଜ, ଘୃତକୌଶିକ, ଶାଣ୍ଡିଲ୍ୟ, ଗୌତମ, ସାବର୍ଣ୍ଣାଭିଧେୟାଂ ସୁହୃଦାହାଂଶ୍ଚ ତଂ ସପାଦଶତ ପ୍ରମିତକନ୍ୟକାଃ ପରଂ ମୁଖତଃ ସମ୍ପାଦ୍ୟ ତୃହ୍ଣ ଅସୃଜତ୍ ।"

ଅର୍ଥ ।—ସହସ୍ରମୁଖ ବିରାଟ୍‌ପୁରୁଷ ବ୍ରହ୍ମା ସମସ୍ତ ଜଗତ ସୃଷ୍ଟିକରି ଉତ୍କଳମାନଙ୍କ ଶାନ୍ତି ନିମିତ୍ତ ତଂ ଏହି ଉତ୍କଳଖଣ୍ଡର ମହତ ସୂର୍ଯ୍ୟାଦ ନବଗ୍ରହ ଏବଂ ତୀର୍ଥ ପ୍ରଭୃତ ବିଷୟ ସବିଶେଷ ପ୍ରକାଶ କରିବା ସକାଶେ ନିଜମୁଖରୁ ବ୍ରହ୍ମଙ୍କ ଅଂଶରେ ଏକଶତ ପଞ୍ଚବିଂଶତ (୧୨୫) ସଂଖ୍ୟକ ଉତ୍କଳବିପ୍ର ସୃଷ୍ଟି କରି ସେମାନଙ୍କୁ ଋଗ୍‌ବେଦର ଅଧିକାର ଏବଂ ସାମଗାନ କରିବାର ଶକ୍ତି ଦେଇଥିଲେ । ସେମାନେ ବାତ୍ସ୍ୟ, ମୌଦ୍ଗଲ୍ୟ, କାଶ୍ୟପ, ପରାଶର, ଭରଦ୍ୱାଜ, ଘୃତକୌଶିକ, ଶାଣ୍ଡିଲ୍ୟ, ଗୌତମ ଓ ସାବର୍ଣ୍ଣି ଏହି ନବଗୋତ୍ର ସମ୍ପନ୍ନ ହେଲେ । ଏମାନଙ୍କ ବିବାହ ସକାଶେ ବିରାଟ୍‌ପୁରୁଷ ତଂ ଏହି ଉତ୍କଳଖଣ୍ଡର ସହିତ ସ୍ୱୀୟ ମୁଖରୁ ଏକଶତ ପଞ୍ଚବିଂଶତ (୧୨୫) ସଂଖ୍ୟକ କନ୍ୟା ସୃଷ୍ଟି କରି ସେମାନଙ୍କୁ ସମର୍ପି କରିଥିଲେ ।

"ପ୍ରିୟେ ତତ୍ର କଳ୍ପାଦ୍ୟେ ବ୍ରହ୍ମଣୋ ମୁଖତଃ ପୁରା ।
ବ୍ରହ୍ମାଂଶୈରୁତ୍କଳବିପ୍ରାଃ ସ୍ୟୁଃ ସପାଦ ଶତ ସଂଖ୍ୟୟା ॥
(ବ୍ରହ୍ମଯାମଳ ।)

ଅର୍ଥ ।—(ପାର୍ବ୍ବତୀ ଦେବୀ ପଚାରିବାରୁ ମହାଦେବ କହିଲେ) ହେ ପ୍ରିୟେ ! ପୂର୍ବକାଳରେ ସହସ୍ରବଦନ ବ୍ରହ୍ମାଙ୍କ ମୁଖରୁ

ସୂର୍ଯ୍ୟାଂଶ ଦ୍ୱାରା ଏକଶତ ପଞ୍ଚବିଂଶତି ସଂଖ୍ୟକ ଗ୍ରହବିପ୍ର ଜାତ ହୋଇଥିଲେ ।

ଉପରୋକ୍ତ ବଚନ ଦ୍ୱୟର ତୁଳନାରୁ ଦେଖାଯାଉଅଛି ଯେ, ଗ୍ରହବିପ୍ର ଏବଂ ଅନ୍ୟାନ୍ୟ ବିପ୍ରମାନଙ୍କର ଜନ୍ମ ଏକପ୍ରକାର ; ମାତ୍ର ଉଭୟ ମଧ୍ୟରେ ପାର୍ଥକ୍ୟ ଏତିକି ଯେ ଗ୍ରହମାନଙ୍କର ଅର୍ଚ୍ଚନା ପାଇଁ ସୂର୍ଯ୍ୟାଂଶରେ ଗ୍ରହବିପ୍ରମାନଙ୍କର ଉତ୍ପତ୍ତି ଏବଂ ଦେବତାଙ୍କ ଆରାଧନାପାଇଁ ଦେହାଂଶ ବା ମୁଖାଂଶରେ ଅନ୍ୟାନ୍ୟ ବିପ୍ରମାନଙ୍କର ଉତ୍ପତ୍ତି ହୋଇଅଛି । ନିମ୍ନଲିଖିତ ପ୍ରମାଣ ଦ୍ୱାରା ତାହାର ଯଥାର୍ଥ ଉପଲବ୍ଧି ହେବ ।

"ଯଜ୍ଞୋତ୍ତମିଂ ସୃଷ୍ଟ୍ୱା ସୁରସେବାର୍ଥଂ ପାଦୋନ ଚତୁଃଶତ ସଂଖ୍ୟାଯୁତଃ ସୁରାଂଶୈର୍ବ୍ରାହ୍ମଣାନ୍ ତ୍ରିବିଧାନ୍ ସାଗ୍ନିକ ନିରଗ୍ନିକ ଲାଜୀକାନ୍ ଋଗ୍‌ବେଦ ସାମବେଦ ଯଜୁର୍ବେଦାଥର୍ବବେଦୈଃ ସମ୍ପାଦ୍ୟାଦାଦ୍ୟ ପଞ୍ଚାଗ୍ନି ପ୍ରମିତ କନ୍ୟକା ଅନ୍ୟମୁଖତଃ କୃତୋଦ୍ୱାହ ଜାମାତୃକେଣ ।" (ବ୍ରହ୍ମସିଦ୍ଧାନ୍ତ ।)

ଅର୍ଥ ।—ସହସ୍ରଶୀର୍ଷ ବିରାଟ୍‌ପୁରୁଷ ଯଜ୍ଞୋତ୍ସବରେ ଜଗତ ସୃଷ୍ଟି କରି ଦେବତାମାନଙ୍କ ସେବା ସକାଶେ ନିଜମୁଖ ଦ୍ୱାରା ସୁରାଂଶରୁ ୩୭୫ ସଂଖ୍ୟକ ସାଗ୍ନିକ, ନିରଗ୍ନିକ ଓ ଲାଜୀକ ଏହି ତ୍ରିବିଧ ଋକ-ଯଜୁ-ସାମ ଓ ଅଥର୍ବବେଦ ସମ୍ପନ୍ନ ବ୍ରାହ୍ମଣ ସୃଷ୍ଟି କଲେ ଏବଂ ସେମାନଙ୍କ ବିବାହ ନିମନ୍ତେ ୩୭୫ ସଂଖ୍ୟକ କନ୍ୟା ସର୍ଜନା କରି ସେମାନଙ୍କୁ ସମର୍ପି କରିଥିଲେ ।

ଗ୍ରହାଣାମର୍ଚ୍ଚନାର୍ଥେତୋଃ ଶାକଦ୍ୱୀପ ସମୁଦ୍ଭବଃ ।
ବ୍ରହ୍ମବକ୍ତ୍ରାଦ୍‌ଭବେଦ୍ଦନୂ ଦୈବଜ୍ଞୋ ବ୍ରାହ୍ମଣୋ ଧ୍ରୁବଂ ।
( ବ୍ରହ୍ମଯାମଳ । )

ଅର୍ଥ ।—ଗ୍ରହମାନଙ୍କର ଅର୍ଚ୍ଚନାପାଇଁ ବ୍ରହ୍ମାଙ୍କ ମୁଖରୁ ଦୈବଜ୍ଞ ବ୍ରାହ୍ମଣ ଉତ୍ପନ୍ନ ହୋଇ ଶାକଦ୍ୱୀପରେ ବାସ କରିଥିଲେ ।

ଶାସ୍ତ୍ରାନ୍ତରରେ ଶାକଦ୍ୱୀପବାସୀ ବ୍ରାହ୍ମଣଙ୍କର ଉତ୍ପତ୍ତି ସମ୍ବନ୍ଧରେ ଭିନ୍ନ ପ୍ରମାଣ ମିଳଇ । ଭବିଷ୍ୟପୁରାଣରେ ଉକ୍ତଅଛି ଯେ, ଶାକଦ୍ୱୀପର ମଣ୍ଡଳପତି ପ୍ରିୟବ୍ରତ-ତନୟ ମେଧାତିଥି, ସୂର୍ଯ୍ୟଦେବଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା କରିବା ସକାଶେ ଗୋଟିଏ ପରମରମଣୀୟ ଗୃହ ନିର୍ମାଣ କରି ତନ୍ମଧ୍ୟରେ ଗୋଟିଏ ସୁଲକ୍ଷଣା ହେମମୟୀ ପ୍ରତିମା ସ୍ଥାପିତ କରିଥିଲେ ଏବଂ ଉକ୍ତ ପ୍ରତିମା-ପୂଜକ ବ୍ରାହ୍ମଣ ନିମନ୍ତେ ସୂର୍ଯ୍ୟଦେବଙ୍କୁ ପ୍ରାର୍ଥନା କଲେ । ନୃପତିଙ୍କ ପ୍ରାର୍ଥନାନୁସାରେ ସୂର୍ଯ୍ୟଦେବ ୮ଜଣ ବ୍ରାହ୍ମଣ ସର୍ଜନା କରିଥିଲେ । ସେମାନେ କେବଳ ସୂର୍ଯ୍ୟ ଉପାସକ ବୋଲି ମଗ ନାମରେ ପରିଚିତ । ଭବିଷ୍ୟପୁରାଣ ୧୭୬ ଅଧ୍ୟାୟରେ ଲିଖିତ ହୋଇଅଛି ଯେ,—

ସୃଜାମି ପ୍ରଥମଂ ବର୍ଣ୍ଣଂ ମଗସଞ୍ଜ୍ଞ ମନୌପମଂ ।
ଇତ୍ୟୁକ୍ତ୍ୱା ତମହଂ ବୀର ସଜ୍ଞାନଂ ଖଗସତ୍ତମ !
ଜଗାମ ପରମାଂ ଚିନ୍ତାଂ ତସ୍ୟ କାର୍ଯ୍ୟସ୍ୟ ସିଦ୍ଧୟେ ।
ଅଥମେ ଚିନ୍ତ୍ୟମାଣସ୍ୟ ସ୍ୱଶରୀରାଦ୍‌ବିନିଃସୃତାଃ ।
ଶଶିକୁନ୍ଦେନ୍ଦୁ ସଙ୍କାଶାଃ ସଂଖ୍ୟୟାଷ୍ଟୌ ମହାବଳାଃ ।
ପଠନ୍ତି ଚତୁରୋବେଦାନ୍ ସାଙ୍ଗୋପନିଷଦାନ୍ ଖଗ ।

ଅର୍ଥ ।—(ସୂର୍ଯ୍ୟଦେବ କହିଲେ) "ଆମ୍ଭେ ତୁମ୍ଭର ମଙ୍ଗଳ ସକାଶେ ମଗ ନାମଧେୟ ଅନୁପମ ବ୍ରାହ୍ମଣମାନଙ୍କୁ ସୃଷ୍ଟି କରୁଅଛୁଁ ।" ହେ ଖଗସତ୍ତମ ! ନୃପତିଙ୍କୁ ଏହି କଥା କହି କାର୍ଯ୍ୟସିଦ୍ଧି ନିମିତ୍ତ କିଛି ସମୟ ଚିନ୍ତାକଲି । ମୁଁ ଚିନ୍ତାନିବିଷ୍ଟ ହେବାରୁ ମୋ ଶରୀରରୁ ସହସା ଅଠଜଣ ମହାବଳ ବ୍ରାହ୍ମଣ ପ୍ରାଦୁର୍ଭୂତ ହେଲେ । ସେହି ବ୍ରାହ୍ମଣମାନଙ୍କର କର୍ପୂର, କୁନ୍ଦ ଓ ଚନ୍ଦ୍ରପରି ଅତିଶୟ ଶୁଭ୍ରକାନ୍ତି, (ପରିଧେୟ କାଷାୟବସନ)

ଏବଂ ସେମାନେ ସମସ୍ତେ ସାଙ୍ଗୋପାଙ୍ଗଷଡ଼ ଚତୁର୍ବେଦ ପାଠରେ ନିରତ ଥିଲେ ।

ଯୋଽୟଂ ମଗେତି ବୈ ପ୍ରୋକ୍ତୋ ମଗୋଽବ୍ୟୋ ଦ୍ୱିଜୋତ୍ତମଃ ।
ଅବ୍ୟାସ୍ତେତେ ସ୍ମୃତା ବିପ୍ରା ଅଦତୀଙ୍ଗ ସମୁଦ୍ଭବାଃ ।
ଅବ୍ୟାସ୍ତେ ବ୍ରାହ୍ମଣାଶ୍ଚୈବ ଭୋଜକା ମମ ପୂଜକାଃ ।
ପୂଜୟନ୍ତି ଚ ତେ ଦେବାନ୍ ଅବ୍ୟଙ୍ଗଂ ତେନ ତେ ଗତାଃ ।
ଭୋଜକାଦଭ୍ୟଜାତାସ୍ତ ଅବ୍ୟାସ୍ତେ ପରିକୀର୍ତ୍ତିତାଃ ।

(ଭବିଷ୍ୟପୁରାଣ ବ୍ରାହ୍ମପର୍ବ ।)

ଅର୍ଥ ।—ସୂର୍ଯ୍ୟଦେବ କହୁଅଛନ୍ତି,—ଯେଉଁମାନେ ମଗ ନାମରେ ଅଭିହିତ ସେମାନେ ଅବ୍ୟଙ୍ଗଧାରୀ ଉତ୍କୃଷ୍ଟ ବ୍ରାହ୍ମଣ । ଏହି ଅବ୍ୟ ବ୍ରାହ୍ମଣମାନେ ମୋର (ସୂର୍ଯ୍ୟ) ପୂଜକ ବୋଲି ସେମାନେ ଭୋଜକଙ୍କ* ନାମରେ ବିଖ୍ୟାତ । ସେମାନେ ଦେବତା ପୂଜା କରନ୍ତି ଏବଂ ସେମାନେ ଅବ୍ୟଙ୍ଗ ଲାଭ କରିଅଛନ୍ତି ; ଭୋଜକମାନେ ସୂର୍ଯ୍ୟଦେବଙ୍କ ଦେହରୁ ଜାତ ବୋଲି ଅବ୍ୟ ନାମରେ ଖ୍ୟାତ ହୁଅନ୍ତି ।

"ମଗା ବ୍ରାହ୍ମଣଭୂୟିଷ୍ଠା ମାଗଧା କ୍ଷତ୍ରିୟାସ୍ତଥା ।
ବୈଶ୍ୟାସ୍ତୁ ମାନଗାଶ୍ଚୈବଃ ଶୂଦ୍ରାସ୍ତେଷାନ୍ତୁ ମନ୍ଦଗାଃ ।
ନ ତେଷାଂ ସଙ୍କରଃ କଶ୍ଚିଦ୍ ବର୍ଣ୍ଣାଶ୍ରମକୃତଃ କ୍ୱଚିତ୍ ।
ତେଜସଶ୍ଚାନୁଭାବସ୍ୟ ନିର୍ମିତାବୈ ସ୍ୱୟମ୍ଭୁବଃ ।
ତେଭ୍ୟୋ ବେଦାଶ୍ଚ ଚତ୍ୱାରଃ ପରିହାର୍ଯ୍ୟା ମନ୍ତ୍ରେଯଥା ।

( ଶାମ୍ବପୁରାଣ, ୨୬।୩୦—୩୨ )

---

* "ନୈବେଦ୍ୟଂ ଭୁଞ୍ଜତେ ଯସ୍ମାତ୍ ଭୋଜକସ୍ତେନ ଚ ଉଚ୍ୟତେ ।
ପୂଜୟନ୍ତି ଚ ଦେବାନ୍ନାଂ ତେନ ତେ ଭୋଜକାଃ ସ୍ମୃତା ।"
'ମଗାନାଂ ଭୋଜକତ୍ୱ ନ୍ନିଃ ।" ଇତି ଭବିଷ୍ୟପୁରା ୧୪୦ ଅଧ୍ୟାୟ ।

ଅର୍ଥ ।—ମଗମାନେ ବ୍ରାହ୍ମଣ, ମାଗଧମାନେ କ୍ଷତ୍ରିୟ, ମାନସମାନେ ବୈଶ୍ୟ ଏବଂ ମନ୍ଦଗମାନେ ଶୂଦ୍ର ନାମରେ ପରିଚିତ । ଏମାନଙ୍କ ମଧ୍ୟରେ ସଙ୍କରବର୍ଣ୍ଣ ନାହିଁ । ସମସ୍ତେ ଧର୍ମ୍ମାଶ୍ରିତ, ଏମାନେ ଅମୃତ (ସୂର୍ଯ୍ୟ) ତେଜଦ୍ୱାରା ସୃଷ୍ଟ ହୋଇ ଅଛନ୍ତି । ଏମାନଙ୍କପାଇଁ ଅମ୍ଭେ ସରହସ୍ୟ ଶ୍ରୁତିବେଦ ପ୍ରକାଶ କରିଅଛୁଁ ।

ବ୍ରହ୍ମସିଦ୍ଧାନ୍ତ, ରୁଦ୍ରଯାମଳ, ବ୍ରହ୍ମଯାମଳ, ଭବିଷ୍ୟପୁରାଣ ଓ ସାମ୍ବପୁରାଣାଦି ମତରେ (ଶାକଦ୍ୱୀପୀ) ଗ୍ରହବିପ୍ରମାନେ ବ୍ରାହ୍ମଣ କିନ୍ତୁ ସୁବଂଶ ବ୍ରାହ୍ମଣଙ୍କଠାରୁ ଭିନ୍ନ ଏବଂ ଗ୍ରହାଂଶ ବ୍ରାହ୍ମଣ ବୋଲି ପ୍ରସିଦ୍ଧ । ବର୍ତ୍ତମାନ ଭାରତର ଅନେକ ସ୍ଥଳରେ ତଥା ହିନ୍ଦୁସ୍ଥାନରେ ମଧ୍ୟ ଗ୍ରହବିପ୍ରଙ୍କୁ ଶାକଦ୍ୱୀପୀ ବ୍ରାହ୍ମଣ ବୋଲି କହନ୍ତି ।

"ମଗାସ୍ତୁ ବ୍ରାହ୍ମଣା ଦିବ୍ୟଂ ଜମ୍ମତାଃ ସୂର୍ଯ୍ୟମଣ୍ଡଳାତ୍ ।
ଜ୍ୱଳଦର୍କ ପ୍ରଭାକାଶାଃ ଶାକଦ୍ୱୀପ ମବାତରନ୍ । (ବଲ୍ଲାଲଚରିତ)

ଅର୍ଥ ।—ଉଜ୍ଜ୍ୱଳ ସୂର୍ଯ୍ୟଦେବଙ୍କପରି ପ୍ରଭାବଶିଷ୍ଟ ମଗ ବ୍ରାହ୍ମଣମାନେ ସୂର୍ଯ୍ୟମଣ୍ଡଳରୁ ଜାତ ହୋଇ ଶାକଦ୍ୱୀପରେ ଅବତରଣ କରିଥିଲେ । ସୂର୍ଯ୍ୟଦେବଙ୍କଠାରୁ ଗ୍ରହବିପ୍ର ବା ମଗ ବ୍ରାହ୍ମଣମାନେ ଜାତ ହୋଇଅଛନ୍ତି ।

"ଶାକଦ୍ୱୀପାତ୍ ସୁପର୍ଣ୍ଣେନ ଗୃହୀତୋ ଦ୍ୱିଜପୁଙ୍ଗବଃ । (୧)
ଶାକଦ୍ୱୀପୀ ଦ୍ୱିଜଃ ସୋଽଭୂଦ୍ ବିଖ୍ୟାତୋ ଧରଣୀତଳେ ।
ତସ୍ମାଦ୍ ବୈଗଣକୋ ଜାତୋ ହୋମପୂଜା ପରାୟଣଃ ।"
(ବ୍ରହ୍ମବୈବର୍ତ୍ତପୁରାଣ ଜନ୍ମଖଣ୍ଡ ।)

---

(୧) "ଦ୍ୱିଜପୁଙ୍ଗବ" ସ୍ଥଳେ "ଯଷ୍ଟ ଦେବଳଃ" ଏହପରି ପାଠାନ୍ତର ଅଛି, କିନ୍ତୁ ତାହା ଶାସ୍ତ୍ରବିରୁଦ୍ଧ । କାରଣ ଶାକଦ୍ୱୀପରେ ଦେବଳ ବ୍ରାହ୍ମଣର ଉତ୍ପତ୍ତି ହୋଇନାହିଁ ।

ଅର୍ଥ ।—ଶାକଦ୍ୱୀପରୁ ଗରୁଡ଼ ଯେଉଁ ଶ୍ରେଷ୍ଠବ୍ରାହ୍ମଣମାନଙ୍କୁ ଆଣାଇଥିଲେ, ସେମାନେ ପୃଥିବୀରେ "ଶାକଦ୍ୱୀପୀ ବ୍ରାହ୍ମଣ" ନାମରେ ବିଖ୍ୟାତ । ସେହି ବ୍ରାହ୍ମଣଙ୍କଠାରୁ ହୋମପୂଜା-ପରାୟଣ ଗଣକମାନଙ୍କର ଉତ୍ପତ୍ତି ହୋଇଥିଲା ।

ଭବିଷ୍ୟପୁରାଣୋକ୍ତ ମଗ, ଦିବ୍ୟ, ଯାଚକ ଓ ଭୋଜକ ଏବଂ ସାମ୍ବପୁରାଣୋକ୍ତ ମଗ ଏକଜାତି ଭିନ୍ନ ନୁହେଁ । ଏମାନେ ସୂର୍ଯ୍ୟଦେବଙ୍କ ଅଙ୍ଗରୁ ଉତ୍ପନ୍ନ ହୋଇଅଛନ୍ତି । କିନ୍ତୁ ସୂର୍ଯ୍ୟଦେବ କୌଣସି ଜାତିର ସୃଷ୍ଟି କରିନାହାନ୍ତି । ଉପାସକ ଉପାସ୍ୟ ଦେବତାଙ୍କ ଅଂଶ ସମ୍ଭୂତ, ଯେହେତୁ ଶିବ କହିଅଛନ୍ତି ଯଥା ;—

"ମଦଂଶାସ୍ତୈବ ଯେ ଭକ୍ତାଃ ଶୈବାସ୍ତେ ପରିକୀର୍ତ୍ତିତା ।"

(ମୁଣ୍ଡମାଳା ତ. ।)

ଅର୍ଥାତ୍ ଶୈବମାନେ ମୋର ଅଂଶ ସମ୍ଭୂତ । ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ଭିନ୍ନ କୌଣସି ଦେବତା ପ୍ରଜାସୃଷ୍ଟି କରିନାହାନ୍ତି । ସୁତରାଂ ବ୍ରହ୍ମସିଦ୍ଧାନ୍ତ, ରୁଦ୍ରଯାମଳ ଓ ବ୍ରହ୍ମଯାମଳୋକ୍ତ ବ୍ରହ୍ମାଙ୍କର ମୁଖୋତ୍ପନ୍ନ ଗ୍ରହବ୍ରାହ୍ମଣ ସୂର୍ଯ୍ୟଦେବଙ୍କର ଉପାସକ ; ଏଥିଯୋଗୁଁ ଭବିଷ୍ୟପୁରାଣ ଓ ସାମ୍ବପୁରାଣରେ ସୂର୍ଯ୍ୟାଙ୍ଗ ସମ୍ଭୂତ ବୋଲି କଳ୍ପିତ ହୋଇଅଛି । ସୁବିଜ୍ଞ ପାଠକମାନେ ଦେଖିବେ ଯେ, ପ୍ରଥମେ ପ୍ରଜାସୃଷ୍ଟି ସମୟରେ ଜାତି ଥିଲା କିନ୍ତୁ ଭେଦବୁଦ୍ଧି ନ ଥିଲା । କାଳକ୍ରମେ କର୍ମ ବା ଉପାସନା ଦ୍ୱାରା ଜାତି ନିର୍ଦ୍ଧାରିତ ହୋଇଅଛନ୍ତି । ଭରଦ୍ୱାଜ ଏ ସମ୍ବନ୍ଧରେ ଭୃଗୁଙ୍କୁ ପଚାରିବାରେ ଭୃଗୁ ଉତ୍ତର ଦେଲେ ;—

"ନ ବିଶେଷୋଽସ୍ତି ବର୍ଣ୍ଣାନାଂ ସର୍ବଂ ବ୍ରାହ୍ମମିଦଂ ଜଗତ୍ ।
ବ୍ରାହ୍ମଣା ପୂର୍ବସୃଷ୍ଟଂ ହି କର୍ମଭିର୍ବର୍ଣ୍ଣତାଂ ଗତମ୍ ।"

( ମହାଭାରତ ମୋକ୍ଷଧର୍ମ ପର୍ବାଧ୍ୟାୟ ୧୮୮ )

ଅର୍ଥ ।—ପ୍ରକୃତରେ ବର୍ଣ୍ଣର ଇତର ବିଶେଷ ନଥିଲାହିଁ, ଜଗତରେ ଯାବତୀୟ ମନୁଷ୍ୟ ଦ୍ୱିଜରେ ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟି ହୋଇଥିଲେ । ସମସ୍ତେ ( ଏକଷସିରନ୍ତର୍ଗତ ହେତୁ ) ବ୍ରହ୍ମ ନାମରେ ପରିଚିତ ହେଉଥିଲେ । କାଳକ୍ରମେ ଗୁଣ ଓ କର୍ମ ଦ୍ୱାରା ଜାତି ନିର୍ବାଚିତ ହୋଇଅଛି ।

ଗ୍ରହାଂଶ ବ୍ରାହ୍ମଣଙ୍କର କର୍ମ ଗ୍ରହପୂଜା ଓ ଗ୍ରହଦାନ ଗ୍ରହଣ କରିବା ଦ୍ୱାରା ଗ୍ରହବିପ୍ର ସଂଜ୍ଞା ପ୍ରାପ୍ତ ହୋଇଅଛନ୍ତି । ଭାରତରେ ଏମାନେ "ଶାକଦ୍ୱୀପୀ ବ୍ରାହ୍ମଣ" ବୋଲି ପରିଚିତ । (ସୁବିଜ୍ଞ ପାଠକମାନଙ୍କ ଗୋଚରାର୍ଥେ ଶାକଦ୍ୱୀପର ସୂକ୍ଷ୍ମବିବରଣ ଦ୍ୱିତୀୟ ଅଧ୍ୟାୟରେ ପ୍ରଦତ୍ତ ହେଲା ।)

# ଦ୍ୱିତୀୟ ଅଧ୍ୟାୟ ।

## ଶାକଦ୍ୱୀପର ଜାତିବିଭାଗ ।

ମହାଭାରତ ଭୀଷ୍ମପର୍ବ ୧୧ଶ ଅଧ୍ୟାୟରେ ଲେଖାଅଛି ଯେ, ଶାକଦ୍ୱୀପ ଜମ୍ବୁଦ୍ୱୀପର ଦ୍ୱିଗୁଣ, ଏହା କ୍ଷୀରୋଦ ସମୁଦ୍ରରେ ପରିବେଷ୍ଟିତ । ସେଠାରେ ଅତି ପବିତ୍ର ଜନପଦସବୁ ଅବସ୍ଥିତ ଅଛି । ସେଠାକାର ପ୍ରଜାମାନେ ଶୂରବର୍ଣ୍ଣରେ ବିରକ୍ତ, ଧର୍ମଜୀବୀ ଓ ସ୍ୱ ସ୍ୱ ଧର୍ମରେ ଏକାନ୍ତ ଅନୁରକ୍ତ ଥିଲେ । ଶାକଦ୍ୱୀପର ପ୍ରମାଣ ଅନେକ ପୁରାଣାଦିରେ ବିଶେଷ ଭାବରେ ବର୍ଣ୍ଣିତ ହୋଇଅଛି ।

ଏହି ଶାକଦ୍ୱୀପ* ଯେ କେଉଁସ୍ଥାନରେ ଅବସ୍ଥିତ ତାହା ନିରୂପଣ କରିବା କଠିନ ହେଲେହେଁ, ପୌରାଣିକ ଓ ଐତିହାସିକମାନେ ସ୍ଥିର କରିଅଛନ୍ତି ଯେ, ବର୍ତ୍ତମାନ ତାତାର, ଏସିଆଟିକ ରୁସିଆ, ସାଇବେରିଆ, ମସ୍କୋଭି, କ୍ରିମିଆ, ପୋଲାଣ୍ଡ, ହଙ୍ଗେରିର କେତେକାଂଶ, ଲିଥୁଆନିଆ, ଜର୍ମାନିର ଉତ୍ତରାଂଶ, ସୁଇଡେନ, ନରୱେ ପ୍ରଭୃତି ଜନପଦ ସେହି ପ୍ରାଚୀନ ଶାକଦ୍ୱୀପ ଅନ୍ତର୍ଗତ ଥିଲା (୧) । ତର୍କିସ୍ଥାନ ବର୍ତ୍ତମାନ ପାରସ୍ୟଦେଶର ଉତ୍ତରାଂଶଠାରୁ ସୀମା ଆରମ୍ଭ । ପାରସିକମାନଙ୍କର ପ୍ରଧାନ ଧର୍ମ୍ମଶାସ୍ତ୍ର "ଅବସ୍ତା", ଏହି ଅବସ୍ତା ଗ୍ରନ୍ଥର ଯସ୍ନ ନାମକ ବିଭାଗରେ ଚାରିବର୍ଣ୍ଣର ଉଲ୍ଲେଖ ଅଛି । ଯସ୍ନ-ଟୀକାକାର ନେରିଓସିଂହ ଅର୍ଥ କରିଅଛନ୍ତି—ଅଗ୍ରର୍ପ୍ୟ, କ୍ଷତ୍ରିୟ, କୁଟୁମ୍ବିନିର୍ବେଶ୍ୟ ଓ ପ୍ରକୃତକର୍ମ୍ମଜ । ପଣ୍ଡିତ ହାର୍ଣ୍ଣି ସାହେବ ଉକ୍ତ ଜାତିବିଭାଗ ସମ୍ବନ୍ଧରେ ବ୍ରାହ୍ମଣ, କ୍ଷତ୍ରିୟାଦିର ଉଲ୍ଲେଖ କରିଅଛନ୍ତି (୨) । ଏହି ଚାରିଜାତି ବ୍ୟତୀତ ଶାକଦ୍ୱୀପରେ ଅନ୍ୟାନ୍ୟ ଜାତିଙ୍କର ମଧ୍ୟ ବାସ ଥିଲା, ତାହା ଗ୍ରୀକ ଐତିହାସିକମାନେ ଲିପିବଦ୍ଧ କରିଅଛନ୍ତି (୩) । ଭାଗବତାଦି ପୁରାଣମାନଙ୍କରେ ଲେଖାଅଛି ଯେ, ପ୍ରିୟବ୍ରତଙ୍କ ପୁତ୍ର ମେଧାତିଥି ଶାକଦ୍ୱୀପରେ ରାଜା ହୋଇଥିଲେ । ସୁତରାଂ

---

* "ଜମ୍ବୁଦ୍ୱୀପାତ୍ ପରଂ ଯସ୍ମାତ୍ ଶାକଦ୍ୱୀପମିତି ସ୍ମୃତମ୍ । (ଭବିଷ୍ୟପୁରାଣ)
ଅର୍ଥାତ୍ ଜମ୍ବୁଦ୍ୱୀପ ପରେ ଶାକଦ୍ୱୀପ ବୋଲି କଥିତ ।

(୧) ବ୍ରାହ୍ମଣକାଣ୍ଡ ୪ର୍ଥ ଅଂଶ ୬ପୃଷ୍ଠାରେ ବିଶେଷ ବିବରଣ ଦ୍ରଷ୍ଟବ୍ୟ ।

(୨) Indische theorieen over de Standenverdeeting, P. II.

(୩) Pinkerton's Researches on Goth Vol, II, Tod's Rajasthan, Vo. I, 51—57,

ଅତି ପ୍ରାଚୀନକାଳରୁ ଶାକଦ୍ୱୀପରେ ଚତୁର୍ବର୍ଣ୍ଣୀୟ ସମାଜ ଗଠିତ ହୋଇଥିଲା, ପରେ କାଳକ୍ରମେ ଜାତିଭେଦ ପ୍ରଥା ରହିତ ହୋଇଅଛି । ସେ ଯାହାହେଉ ଶାକଦ୍ୱୀପରେ ଏ ଚ ବର୍ଣ୍ଣ ଥିଲା, ତାହା ପାଠକମାନଙ୍କ ଅବଗତାର୍ଥେ ଧର୍ମ୍ମଶାସ୍ତ୍ରରୁ ପ୍ରମାଣମାନ ଉଦ୍ଧୃତ କରାଗଲା ।

ମଗାଶ୍ଚ ମାଗଧାଶ୍ଚୈବ ମାନସା ମନ୍ଦଗାସ୍ତଥା ।
ମଗା ବ୍ରାହ୍ମଣଭୂୟିଷ୍ଠା ମାଗଧାଃ କ୍ଷତ୍ରିୟାସ୍ତଥା ।
ବୈଶ୍ୟାସ୍ତୁ ମାନସାସ୍ତେଷାଂ ଶୂଦ୍ରାସ୍ତେଷାନ୍ତୁ ମନ୍ଦଗାଃ ।
ଶାକଦ୍ୱୀପେ ତୁ ତୈ ବିଷ୍ଣୁଃ ସୂର୍ଯ୍ୟରୂପ ଧରୋ ମୁନେ ।

(ବିଷ୍ଣୁ ପୁରାଣ ୨--୪--୭୦।୭୧)

ଅର୍ଥ ।—ମଗ, ମାଗଧ, ମାନସ ଓ ମନ୍ଦଗ ଏହି ଚାରିବର୍ଣ୍ଣ । ମଗମାନେ ବ୍ରାହ୍ମଣଶ୍ରେଷ୍ଠ, ମାଗଧମାନେ କ୍ଷତ୍ରିୟ, ମାନସମାନେ ବୈଶ୍ୟ ଓ ମନ୍ଦଗମାନେ ଶୂଦ୍ର । ଏହି ଶାକଦ୍ୱୀପରେ ସୂର୍ଯ୍ୟ-ରୂପଧାରୀ ବିଷ୍ଣୁ ଅବସ୍ଥାନ କରୁଅଛନ୍ତି ।

ଭବିଷ୍ୟପୁରାଣ, ସାମ୍ବପୁରାଣ ଓ ମହାଭାରତ ଆଦି ଶାସ୍ତ୍ରରେ ଅବିକଳ ଏହିପରି ପ୍ରମାଣ ଲେଖିଥିବାସ୍ଥଳେ ତାହା ପୁନରୁଲ୍ଲେଖ କରିବା ଅନାବଶ୍ୟକ । ସୁତରାଂ ଶାସ୍ତ୍ରାନ୍ତରରେ ମଗ ଶବ୍ଦର ଅର୍ଥ ଯଥା ;—

"ମକାରେ ଭଗବାନ୍ ଦେବୋ ଭାସ୍କରଃ ପରିକୀର୍ତ୍ତିତଃ ।
ଗକାରେ ଧ୍ୟାନଯୋଗାଚ୍ଚ ମଗାହ୍ୟେତେ ପ୍ରକୀର୍ତ୍ତିତାଃ ।"

(ଭବିଷ୍ୟପୁରାଣ ୧୪୪ଅଃ, ୨୫ଶ୍ଳୋକ ।)

ଅର୍ଥ ।—ଭଗବାନ୍ ସୂର୍ଯ୍ୟଦେବ "ମ" ନାମରେ କଥିତ ହୁଅନ୍ତି ଏବ ଧ୍ୟାନଯୋଗର ନାମ "ଗ", ଏହି (ବ୍ରାହ୍ମଣ)ମାନେ ତାହାଙ୍କୁ (ସୂର୍ଯ୍ୟଦେବଙ୍କୁ) ଆରାଧନା କରନ୍ତି ବୋଲି ସେମାନଙ୍କ ନାମ ମଗ ।

ପାରଶିକମାନଙ୍କ ଅଦମ ଧର୍ମଶାସ୍ତ୍ର ଜନ୍ଦ ଅବସ୍ତା ୟସ୍ନ ଭାଗରେ (୧) "ମଗ" ଶବ୍ଦ ଅଛି, ତାହାର ଅର୍ଥ ଆଧ୍ୟାତ୍ମିକ ଶକ୍ତି, ଗୁରୁତ୍ୱ ବ୍ରହ୍ମବିଦ୍ୟା । ଯେଉଁମାନେ ଆଧ୍ୟାତ୍ମଶକ୍ତିଶାଳୀ ସେହିମାନେ ମଗ ବା ମଗବ ନାମରେ ଖ୍ୟାତ ଥିଲେ (୨) । ୟସ୍ନରେ ଲେଖାଅଛି ଯେ, ଜରଥୁସ୍ତ୍ର (୩) ମଗବମାନଙ୍କୁ ପୂର୍ବକାଳରେ ସ୍ୱର୍ଗରାଜ୍ୟରେ ପ୍ରତିଷ୍ଠିତ କରାଇଥିଲେ । ହିରୋଡୋଟାସ ଲେଖିଅଛନ୍ତି, ପାରସ୍ୟ ସମ୍ରାଟ୍‌ମାନେ ଅଗ୍ନିପୂଜକ ମଗ ବା ମଗବ ନାମଧେୟ ପ୍ରସିଦ୍ଧ ବ୍ୟକ୍ତିମାନଙ୍କୁ ପୁରୋହିତରୂପେ ନିଯୁକ୍ତ କରୁଥିଲେ । ସୂର୍ଯ୍ୟୋପାସକମାନେ ପାରଶିକଙ୍କ ନିକଟରେ ମଘୁସ୍ ବା ମଗ, ହିନ୍ଦୁପୁରାଣରେ ମଗ ବା ମଗସ୍ ଏବଂ ପ୍ରାଚୀନ ଗ୍ରିକମାନଙ୍କ ନିକଟରେ "ମଗୀ" ନାମ ପ୍ରସିଦ୍ଧଥିଲ (୪) ।

ମଗମାନେ ଯେ ସୂର୍ଯ୍ୟୋପାସକ ଥିଲେ ତାହା ଶାସ୍ତ୍ରୀୟ ଓ ଐତିହାସିକ ପ୍ରମାଣ ଦ୍ୱାରା ସ୍ପଷ୍ଟରୂପେ ଜଣାଯାଉଅଛି । ଏପର ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କ ମଧ୍ୟରେ ଶାକଦ୍ୱୀପୀ ବ୍ରାହ୍ମଣ ଯେ ଉତ୍କୃଷ୍ଟ, ତାହା ଶ୍ରୀଧରସ୍ୱାମୀ ବିଷ୍ଣୁପୁରାଣ ଟୀକାରେ ଲେଖିଅଛନ୍ତି—
'ମଗା ବ୍ରାହ୍ମଣଭୂୟିଷ୍ଠାଃ, ପୂର୍ବୋକ୍ତେଷୁ ବ୍ରାହ୍ମଣେଷୁମଧ୍ୟେଶ୍ରେଷ୍ଠାଃ ।'
ଅର୍ଥାତ୍ ପୂର୍ବୋକ୍ତ ୫ଦ୍ୱୀପର ବର୍ଣ୍ଣିତ ବ୍ରାହ୍ମଣମାନଙ୍କ ମଧ୍ୟରେ ମଗମାନେ ଶ୍ରେଷ୍ଠ ବ୍ରାହ୍ମଣ ଅଟନ୍ତି ।
"ମଗା ବ୍ରାହ୍ମଣ ଭୂୟିଷ୍ଠାଃ ସ୍ୱକର୍ମ କରତା ଦ୍ୱିଜାଃ ।" (ପଦ୍ମପୁରାଣ)

---

(୧) ୟସ୍ନ ୫୧।୧୫,

(୨) M. Haug's Essays on the Parsis, P. 169,

(୩) ମଗ-ପୁରୋହିତବଂଶୀୟ ଜନୈକ ଧର୍ମ ପ୍ରବର୍ତ୍ତକଙ୍କ ନାମ, ଏବ୍ୟକ୍ତି 'ଅବସ୍ତା' ପ୍ରଚାର କରିଥିଲେ ।

(୪) ବ୍ରାହ୍ମଣ-କାଣ୍ଡ ୪ର୍ଥ ଅଂଶ ୧୨ପୃଷ୍ଠା ।

# ତୃତୀୟ ଅଧ୍ୟାୟ ।

## ଗ୍ରହବିପ୍ରଙ୍କର ଉତ୍ପତ୍ତି ।

ଦ୍ୱାପର ଯୁଗରେ ଜଗତ୍ ନିୟନ୍ତା [illegible] ଜାମ୍ବବତୀ ଗର୍ଭଜାତ ଶାମ୍ବ ଗ୍ରହବୈଗୁଣ୍ୟ ବଶତଃ ପ୍ରବଳ ରୋଗାକ୍ରାନ୍ତ ହୋଇଥିଲେ । ମାତ୍ର ସେ ସମୟରେ ଏତଦ୍ଦେଶ ବା ଜମ୍ବୁଦ୍ୱୀପରେ ଗ୍ରହବିପ୍ରମାନେ ଥିଲେନାହିଁ । ଗ୍ରହଶାନ୍ତି ଓ ସୂର୍ଯ୍ୟପୂଜା ନିମିତ୍ତ ତପସ୍ୱୀ କୁଳପୁରୋହିତ ଗୌରମୁଖଙ୍କ ବାକ୍ୟାନୁସାରେ, ଶାମ୍ବ ସୂର୍ଯ୍ୟଦେବଙ୍କର ଶରଣାପନ୍ନ ହେବାରୁ ସୂର୍ଯ୍ୟଦେବ କହିଲେ ;—

ନ ଯୋଗ୍ୟାଃ ପରିଚର୍ଯ୍ୟାୟାଂ ଜମ୍ବୁଦ୍ୱୀପେ ମମାନଘ ।
ମମ ପୂଜାପରାନ୍ କୃତ୍ୱା ଶାକଦ୍ୱୀପାଦିହାନୟ ।

(ସାମ୍ବପୁରାଣ ୨୬ ଅଃ)

ଅର୍ଥ ।—ହେ ପୂତାତ୍ମନ୍ ! ମୋର ପୂଜାଦି କାର୍ଯ୍ୟରେ ଏହି ଜମ୍ବୁଦ୍ୱୀପ (ଭାରତ)ବାସୀ ବ୍ରାହ୍ମଣମାନଙ୍କର ଯୋଗ୍ୟତା ନାହିଁ । ମୋର ପୂଜାନୁରକ୍ତ ବ୍ରାହ୍ମଣମାନଙ୍କୁ ଶାକଦ୍ୱୀପରୁ ଆନୟନ କର । ଅପିଚ—

ତାନ୍ ମଗାନ୍ ମମପୂଜାର୍ଥଂ ଶାକଦ୍ୱୀପାଦିହାନୟ ।
ଆରୁହ୍ୟ ଗରୁଡ଼ଂ ଶାମ୍ବ ଶୀଘ୍ରଂ ଗତ୍ୱା ବଗ୍ରରଯ୍ନ୍ ।

(ଭବିଷ୍ୟପୁରାଣ ୧୩୯)

ଅର୍ଥ ।—ହେ ସାମ୍ବ ! ମୋର ପୂଜା ନିମିତ୍ତ ମଗ ବ୍ରାହ୍ମଣମାନଙ୍କୁ ଆନୟନ କରିବା ନିମିତ୍ତେ ଅବିଳମ୍ବେ ଗରୁଡ଼ରେ ଆରୋହଣ କରି ଶାକଦ୍ୱୀପାଭିମୁଖେ ପ୍ରସ୍ଥାନ କର ।

ଏବ ଆନୀୟ ତୁ ମଗାନ୍ ସାମ୍ବୋ ମହାମତେ ।
ସମହାତ୍ମା ପୁନଃ ସାମ୍ବସ୍ତନ୍ତ୍ରଭାଗା ସରିତ୍ତଟେ ।

(ଭବିଷ୍ୟ ପୁରାଣ ୧୪ ।୪)

ଅର୍ଥ।—ସେହିପରି ମଗ ବ୍ରାହ୍ମଣମାନଙ୍କୁ ଆଣି ଚନ୍ଦ୍ରଭାଗା ନଦୀର ତଟଦେଶରେ ସାମ୍ବପୁର ନାମକ ଗୋଟିଏ ମନୋରମା-ପୁର ନିର୍ମାଣ କରି ତହିଁରେ ରଖାଇ ଥିଲେ।

ସାମ୍ବପୁରାଣରେ ବର୍ଣ୍ଣିତ ଅଛି ଯେ, ଗରୁଡ଼ ଯେଉଁ ୮ଜଣ ବ୍ରାହ୍ମଣଙ୍କୁ ଶାକଦ୍ୱୀପରୁ ଆଣିଥିଲେ, ସେମାନଙ୍କର ନାମ ;—

ମାର୍କଣ୍ଡୋ ମାଣ୍ଡବୋ ଗର୍ଗଃ ପରାଶର ସ୍ତଥା ଭୃଗୁଃ।
ସନାତନୋଽଙ୍ଗିର ଜହ୍ନୁଃ ଶାକଦ୍ୱୀପ୍ୟଷ୍ଟକୋ ମୁନିଃ।
ତପସ୍ୱିନୋ ମହାତେଜାଃ ପ୍ରତ୍ୟହଂ ଗ୍ରହଗ୍ଲଜାତ।
ଆନୀତୋ ଦେବଦେବେନ ଗରୁଡ଼େନ ମହାତ୍ମନା।

ଅର୍ଥ।—ମାର୍କଣ୍ଡ, ମାଣ୍ଡବ, ଗର୍ଗ, ପରାଶର, ଭୃଗୁ, ସନାତନ, ଅଙ୍ଗିରା ଓ ଜହ୍ନୁ ; ଏହି ଅଠଜଣ ମୁନି ଶାକଦ୍ୱୀପରେ ଅବସ୍ଥିତ ଥିଲେ। ଏମାନଙ୍କର ପୁତ୍ରମାନେ ଛନ୍ଦଗତ ଗୃହନାରେ ମହାତେଜସ୍ୱୀ ଥିଲେ। ଦେବଦେବ ଶ୍ରୀକୃଷ୍ଣ ଗରୁଡ଼ ଦ୍ୱାରା ଶାକଦ୍ୱୀପରୁ ଭାରତବର୍ଷକୁ ଅଠଜଣ ମୁନିପୁତ୍ରଙ୍କୁ ଆଣାଇ ଥିଲେ।

"ବରଦଃ ସୋମ ଈଶାନଃ ଶାନ୍ତଃ ଶୁକ୍ରୋ ଧନଞ୍ଜୟଃ।
ଦନୁର୍ବସୁନ୍ଧରଶ୍ଚୈବ ଇତ୍ୟଷ୍ଟୌ ଛନ୍ଦବ୍ରାହ୍ମଣାଃ॥" (ସାମ୍ବପୁରାଣ)

ଅର୍ଥ।—ବରଦ, ସୋମ, ଈଶାନ, ଶାନ୍ତ, ଭୃଗୁ, ଧନଞ୍ଜୟ, ଦନୁ ଓ ବସୁନ୍ଧର ଏହି ଅଠଜଣ ଛନ୍ଦବ୍ରାହ୍ମଣ। ଏହି ଅଠଜଣଙ୍କ ଭିନ୍ନ ଭିନ୍ନ ଗୋତ୍ର ;—

"ବରଦଃ କାଶ୍ୟପଶ୍ଚୈବ ସୋମସ୍ତୁ ଘୃତକୌଶିକଃ।
ଈଶାନୋ ଗୌତମଶ୍ଚୈବ ଶାନ୍ତଃ କାଶ୍ୟପସ୍ତଥୈବ ଚ।
ଭରଦ୍ୱାଜୋ ଭୃଗୁଶ୍ଚୈବ ପରାଶରେ ଧନଞ୍ଜୟଃ।
ଦନୁ ଶାଣ୍ଡିଲ୍ୟଗୋତ୍ରଃ ସ୍ୟାତ ମୌଦ୍ଗଲ୍ୟସ୍ତୁ ବସୁନ୍ଧରଃ।
( ସାମ୍ବପୁରାଣ। )

ଅର୍ଥ ।—ବହ୍ନିର କାଶ୍ୟପଗୋତ୍ର, ସୋମ ଘୃତକୌଶିକ ଗୋତ୍ର, ଈଶାନ ଗୌତମଗୋତ୍ର, ଶାନ୍ତ ବାତ୍ସ୍ୟଗୋତ୍ର, ଭୃଗୁ ଭରଦ୍ୱାଜଗୋତ୍ର, ଧନଞ୍ଜୟ ପରାଶରଗୋତ୍ର, ଦନୁ ଶାଣ୍ଡିଲ୍ୟଗୋତ୍ର ଏବଂ ବସୁନ୍ଧର ମୌଦ୍ଗଲ୍ୟ ଗୋତ୍ରୀ ଥିଲେ । ସାମବେଦରେ ମଧ୍ୟ ଏହିପରି ଉଲ୍ଲେଖ ଅଛି । )

ଉପରୋକ୍ତ ଅଠଜଣ ଗ୍ରହବିପ୍ରଙ୍କୁ ସାମ୍ବ ନିମ୍ନଲିଖିତମତେ ଗ୍ରହଦାନ ପ୍ରଦାନ କରିଥିଲେ ;—

ଗୁହ୍ୟାବହ୍ନୌ ରବିର୍ଦତ୍ତ ସୋମେ ସୋମସ୍ତଥୈବ ଚ ।
ଈଶାନୋ ଭୂମିପୁତ୍ରେ ଚ ଶାନ୍ତସ୍ତ ଶଶିନନ୍ଦନେ ।
ଶୁକ୍ରସ୍ତ ଶୁକ୍ରଦାନେ ସ୍ୟାତ୍ ସୂର୍ଯ୍ୟପୁତ୍ରେ ଧନଞ୍ଜୟଃ ।
ରାହୁଦାନେ ଦନୁସ୍ତୈବ କେତୁଦାନେ ବସୁନ୍ଧରଃ ।

ଅର୍ଥ ।—ବହ୍ନି ରବି ଓ ବୃହସ୍ପତିଙ୍କର, ସୋମ ଚନ୍ଦ୍ରଙ୍କର, ଈଶାନ ମଙ୍ଗଳଙ୍କର, ଶାନ୍ତ ବୁଧଙ୍କର, ଭୃଗୁ ଶୁକ୍ରଙ୍କର, ଧନଞ୍ଜୟ ଶନିଙ୍କର, ଦନୁ ରାହୁ ଏବଂ ବସୁନ୍ଧର କେତୁଙ୍କର ଦାନ ଗ୍ରହଣ କରିଥିଲେ ।

ଖ୍ରୀଃ ପୂଃ ୭ମ ଶତାବ୍ଦୀର ଗ୍ରୀକ ପଣ୍ଡିତ ଜାନଥୋସଙ୍କ ମତେ ୮୩୦୭ ବର୍ଷ ପୂର୍ବେ ଜରଥୁସ୍ତ୍ର ଅବତୀର୍ଣ୍ଣ ହୁଅନ୍ତି । ଜରଥୁସ୍ତ୍ର ଯେତେବେଳେ ଶାକଦ୍ୱୀପରେ ମଜ୍ଦ-ଧର୍ମ ପ୍ରଚାର କରନ୍ତି, ସେତେବେଳେ ଭାରତରେ ଶ୍ରୀକୃଷ୍ଣ ଗୀତାଧର୍ମ ପ୍ରଚାର କରିଥିଲେ । ରାଜତରଙ୍ଗିଣୀ ଓ ବୃହତ୍‌ସଂହିତା ମତେ ୦୩୪୯ ବର୍ଷ ପୂର୍ବେ କୁରୁ ପାଣ୍ଡବର ଜନ୍ମ ହୋଇଥିଲା । ଉକ୍ତ ବିବରଣୀରୁ ମୋଟାମୋଟି ବୁଝିବାକୁ ଗଲେ ପ୍ରାୟ ୪୦୦୦ ବର୍ଷ ହେଲା ଶାକଦ୍ୱୀପୀ ବ୍ରାହ୍ମଣମାନେ ମୂଲତାନକୁ ଆଗମନ କରନ୍ତି । ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କର ଭାରତାଗମନ ବିଷୟ ସାମ୍ବପୁରାଣରେ ସବିସ୍ତର ବର୍ଣ୍ଣିତ ହୋଇଅଛି ।

# ଚତୁର୍ଥ ଅଧ୍ୟାୟ ।

## ଭାରତରେ ଶାକଦ୍ୱୀପୀ ବ୍ରାହ୍ମଣ ।

ବେଦ ପୁରାଣାଦିରେ ଦେଖାଯାଏ, ସୃଷ୍ଟିର ଉତ୍ପତ୍ତି ସମୟରୁ ଭଦ୍ରବ୍ରାହ୍ମଣମାନେ ସୃଷ୍ଟ ହୋଇଅଛନ୍ତି । ବ୍ରାହ୍ମଣମାନେ ସମସ୍ତେ ସୂର୍ଯ୍ୟୋପାସକ, ଶାକଦ୍ୱୀପରେ ସୂର୍ଯ୍ୟ ଏକମାତ୍ର ଉପାସ୍ୟ ଦେବତା । ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କ ଦ୍ୱାରା ଭାରତରେ ଅନେକ ସୂର୍ଯ୍ୟମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛି । ମୂଲତାନରେ ଶାକଦ୍ୱୀପୀ ବ୍ରାହ୍ମଣଙ୍କର ଅତି ଉପନିବେଶ ହେଲେହେଁ ପଞ୍ଜାବ ଅନ୍ତର୍ଗତ ଶାକଲ ନାମକ ସ୍ଥାନରେ ବହୁପୂର୍ବକାଳରୁ ସେମାନେ ବାସସ୍ଥାପନ କରିଥିଲେ । ପୂର୍ବକାଳରେ ଜାତି ଅନୁସାରେ ଜନପଦ ସମୂହ କଥିତ ହୋଇଅଛି । ଶାକଦ୍ୱୀପୀ ବ୍ରାହ୍ମଣଙ୍କର ବାସ ହେତୁରୁ ସେହିସ୍ଥାନ ଶାକଲ ନାମରେ ପରିଚିତ ହୋଇଅଛି । ଅଦ୍ୟାପି ଅନେକ ଶାକଦ୍ୱୀପୀ ବ୍ରାହ୍ମଣମାନେ ନିଜକୁ "ଶାକଳଦ୍ୱିଜ" ବୋଲି ପରିଚୟ ଦିଅନ୍ତି । ଏଥିରୁ ଜଣାଯାଉଅଛି ଯେ, ଅତି ପ୍ରାଚୀନ କାଳରୁ ଭାରତବର୍ଷରେ ଶାକଦ୍ୱୀପୀ ବ୍ରାହ୍ମଣମାନେ ବାସ କରୁଥିଲେ ଏବଂ ଭାରତରେ ନାନାସ୍ଥାନରେ ଭଦ୍ରବିପ୍ରମାନେ ଭିନ୍ନ ଭିନ୍ନ ନାମ ଧାରଣ କରୁଥିଲେ, ଯଥା ;—

"ଶକଦ୍ୱୀପେ ଚ ବେଦାଗ୍ନିଃ ଶାକଦ୍ୱୀପେ ଚ ସିଦ୍ଧକଃ ।
ଭୂମଧ୍ୟେଚ ବହୁଗ୍ରୁପ ଦୈବଜ୍ଞୋ ଦ୍ୱାରକାପୁରେ ।
ଦ୍ରାବଡ଼େ ମୈଥିଳେ ଚୈବ ଭଦ୍ରବିପ୍ରେତି ସଜ୍ଞିକଃ ।
ଧର୍ମାଙ୍ଗେ ଧର୍ମବକ୍ତାଚ ପାଞ୍ଚାଳେ ଶାସ୍ତ୍ର ସଜ୍ଞକଃ ।
ସାରସ୍ୱତେ ଶୁଭମୁଖୋ ଚାମ୍ପାରେ ଚକ୍ରପଣ୍ଡିତଃ ।

ଖରଦ୍ୱୀପେ ଚ ତତ୍ର   କାମାଟକେ ବେଦପାଠକାଃ ।
ଲୁଦ୍ରାଳେ ଜ୍ୟୋତିଷିବିପ୍ରା   ବ୍ରହ୍ମଲେ ବୃଷ୍ଟିକାରକାଃ ।
ବିରାଟେ ଯୋଗବେତ୍ତା ଚ   ନେପାଳେ ଦେବପୂଜକାଃ ।
ବଙ୍ଗଦେଶେ ଉପାଧ୍ୟାୟୋ ତୀର୍ଥସ୍ଥଂ ତନ୍ତ୍ରଧାରକାଃ ।
କଳିଙ୍ଗେ ଜ୍ଞାନବିପ୍ରଃ ସ୍ୟାତ୍ ଅଗ୍ରଦୈ୍ୟା ଗୌଡ଼ଦେଶକେ ।

(ବ୍ରହ୍ମଯାମଳ ୧୯ଶ ପଟଳ ।)

ଅର୍ଥ ।—ଖରଦ୍ୱୀପରେ ବେଦାଗ୍ନି, ଶାକଦ୍ୱୀପରେ ସିଦ୍ଧତ, ଭୂମଧ୍ୟେ ବ୍ରହ୍ମଜ୍ଞ, ଦ୍ୱାରକାପୁରରେ ଦୈବଜ୍ଞ, ଦ୍ରାବିଡ଼ ଓ ମୈଥିଳରେ ଉତ୍କଳବିପ୍ର, ଧର୍ମାଙ୍ଗରେ ଧର୍ମବକ୍ତା, ପାଞ୍ଚାଳରେ ଶାସ୍ତ୍ରୀ, ମାରସ୍ୱତପ୍ରଦେଶରେ ଶୁଭମୁଖ, ଗାନ୍ଧାରରେ ଚତୁଃପଣ୍ଡିତ, ଝିନ୍ଦୁତରେ ତତ୍ତ୍ୱବିତ୍, କାଟବାଟକ (କାମରୂପ)ରେ ବେଦପାଠକ; ଲୁଦ୍ରାଳୟରେ ଜ୍ୟୋତିଷୀ, ବ୍ରହ୍ମଦେଶରେ ବୃଷ୍ଟିକାରକ, ବିରାଟରେ ଯୋଗବେତ୍ତା, ନେପାଳରେ ଦେବପୂଜକ, ବଙ୍ଗଦେଶରେ ଉପାଧ୍ୟାୟ, ତୀର୍ଥରେ ତନ୍ତ୍ରଧାରକ, କଳିଙ୍ଗରେ ଜ୍ଞାନବିପ୍ର ଏବଂ ଗୌଡ଼ଦେଶରେ ଅଗ୍ରଦୀ ନାମରେ ବିଖ୍ୟାତ ।

ଏଥିରୁ ଜଣାପଡ଼ୁଅଛି ଯେ, ଅତି ପ୍ରାଚୀନ କାଳରୁ ଉତ୍କଳବିପ୍ରମାନେ ଭାରତରେ ବାସ କରୁଥିଲେ । ଏତଦ୍ ଅଞ୍ଚଳର କେତେକାଂଶ ଗୌଡ଼ଦେଶ ବୋଲି କଥିତ ଏବଂ ଏତଦ୍ଦେଶୀୟ ଉତ୍କଳବିପ୍ରମାନେ "ଅଗ୍ରଦୀ ବା ଉତ୍ତାଗ୍ରଦୀ" ନାମରେ ପରିଚିତ । ଭାରତବର୍ଷରେ ୭୦ଗୋଟି ସ୍ଥାନରେ ଉତ୍କଳବିପ୍ରମାନଙ୍କର ବାସସ୍ଥାନ ଥିଲା, ଏହା ରଘୁନାଥ ମିଶ୍ର ବିରଚିତ "ଦ୍ୱିଜାନନ ଚନ୍ଦ୍ରୋଦୟ" ଗ୍ରନ୍ଥରେ ଉଲ୍ଲେଖ ହୋଇଅଛି । ଏପର କୃଷ୍ଣଦାସ ମିଶ୍ର ପ୍ରଣୀତ "ମଗବ୍ୟକ୍ତି" ଗ୍ରନ୍ଥରେ ୫୫ ଗୋଟି ଗ୍ରାମରେ ଶାକଦ୍ୱୀପୀ ବ୍ରାହ୍ମଣମାନେ ପୂଜନୀୟ ଥିଲେ, ଯଥା :—

"[illegible] ଜମ୍ବୁଦ୍ୱୀପସ୍ୟ ମଠେଃ ସଦା ।
ପ୍ରଖ୍ୟାତା ଦ୍ୱାଦଶାଦିତ୍ୟା ମଣ୍ଡଳା ଦ୍ୱାଦଶୋତ୍ତମାଃ ।
ସପ୍ତାର୍କା ବହୁଶୋ ଯେଽନ୍ୟେ କୃତସ୍ତେ ସ୍ୱର୍ଗମୋକ୍ଷଦାଃ ।’

ଅର୍ଥ ।—୨୪ ଅଗ୍ର, ୧୨ ଆଦିତ୍ୟ, ୧୨ ମଣ୍ଡଳ ଏବଂ ୭ ଅର୍କ; ଏହି ୫୫ ଗୋଟି ସ୍ଥାନରେ ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କର ବସତି ଥିଲା ।

ବାହୁଲ୍ୟ ହେତୁରୁ ଅଗ୍ର, ଆଦିତ୍ୟାଦି ସ୍ଥାନର ନାମ ଉଲ୍ଲେଖ ନ କରି, ନିମ୍ନରେ କେବଳ ସପ୍ତାର୍କ ଉଦ୍ଧୃତ କଲୁଁ ।

"ଉଷ୍ଣଃ ପୁଣ୍ଡ୍ରୋ ମାର୍କଣ୍ଡେୟୋ ବାଲେ ଲୋଲଃ କୋଣସ୍ତଥା ।
ଶାକଦ୍ୱୀପୀ କ୍ଷୌଣୀଦେବୈଃ ସପ୍ତାବନ୍ୟାଂ ପୂଜ୍ୟାସ୍ଥାର୍କାଃ ।"

( "ମଗବ୍ୟକ୍ତି" ଗ୍ରନ୍ଥ । )

ଅର୍ଥ ।—ଉଷ୍ଣାର୍କ, ପୁଣ୍ଡ୍ରାର୍କ, ମାର୍କଣ୍ଡେୟାର୍କ, ବାଲାର୍କ, ଲୋଲାର୍କ, କୋଣାର୍କ ଓ ଚନାର୍କ ; ଏହି ସପ୍ତାର୍କରେ ଶାକଦ୍ୱୀପୀ ବ୍ରାହ୍ମଣମାନେ ରାଜାମାନଙ୍କ ନିକଟରେ ଅତିଶୟ ପୂଜନୀୟ ଥିଲେ ।

ଏହି ସବୁ ସ୍ଥାନ ପ୍ରତ୍ନତତ୍ତ୍ୱାନୁସନ୍ଧାନକାରୀ ମହୋଦୟମାନେ ଯାହା ନିର୍ଦ୍ଦେଶ କରିଅଛନ୍ତି ତାହା ଉଲ୍ଲେଖ କରିଗଲୁ ;—ଉଷ୍ଣା ବର୍ତ୍ତମାନ ଉଷ୍ଣା ହାଇଦରାବାଦ, ପୁଣ୍ଡ୍ର ଗୌଡ଼ଦେଶର ରାଜଧାନୀ ପୌଣ୍ଡ୍ର ବର୍ଦ୍ଧନ ନାମକ ପ୍ରସିଦ୍ଧ ସ୍ଥାନ ; ମାର୍କଣ୍ଡେୟ ବର୍ତ୍ତମାନ ଦେଓ ମାର୍କଣ୍ଡ ସାହାବାଦ ଜିଲ୍ଲା ; ଲୋଲାର୍କ କାଶୀଖଣ୍ଡରେ ଉଲ୍ଲିଖିତ କାଶୀସ୍ଥିତ ପ୍ରାଚୀନ ସୂର୍ଯ୍ୟମନ୍ଦିର ପୂଜକମାନେ ଲୋଲାର୍କ ନାମରେ ବିଖ୍ୟାତ ଏବଂ କୋଣାର୍କ ବର୍ତ୍ତମାନ ବଣରେ ଏହା ଓଡ଼ିଶା ମଧ୍ୟରେ ରହିଅଛି ।

ଏଥିରୁ ଜଣାଯାଉଅଛି ଯେ, ଓଡ଼ିଶାରେ ଅନେକ ଦିନରୁ ଛତ୍ରବିପ୍ରମାନଙ୍କର ବାସସ୍ଥାନ ଥିଲା । ବର୍ତ୍ତମାନ ମଧ୍ୟ ଓଡ଼ିଶାର

ଭନ୍ଦ୍ର ସ୍ଥାନରେ ତଥା ବାଲେଶ୍ୱର ଜିଲ୍ଲାରେ ଗ୍ରହବିପ୍ରମାନଙ୍କର ଅବାସଭୂମି ରହିଅଛି । ( ୧୩ଶ ଅଧ୍ୟାୟ ଦ୍ରଷ୍ଟବ୍ୟ । )

ପ୍ରାଚୀନ ପାଲିଗ୍ରନ୍ଥରେ ଦେଖାଯାଏ, ବୁଦ୍ଧଦେବଙ୍କ ସମୟରେ ଶାକଦ୍ୱୀପୀ ବା ଗ୍ରହବ୍ରାହ୍ମଣମାନେ ଭାରତରେ ବିଶେଷ ପ୍ରବଳ ଥିଲେ । ବୁଦ୍ଧଦେବ ଜନ୍ମିବା ସମୟରେ ତାଙ୍କର କୋଷ୍ଠି ଦେଖି ଜ୍ୟୋତିର୍ବିଦ୍‌ମାନେ ଶୁଭାଶୁଭ ନିର୍ଣ୍ଣୟ କରିଥିଲେ (୧) । ଗୁପ୍ତସମ୍ରାଟ୍ ବାଳାଦିତ୍ୟ ମଗଧର "ମିତ୍ର" ଉପାଧିଧାରୀ ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କୁ ସମ୍ମାନିତ କରୁଥିଲେ ଓ ସୂର୍ଯ୍ୟ ସେବାର୍ଥ ଭୂମିଦାନ କରିଥିଲେ (୨) । ବରାହମିହିରଙ୍କ ସମୟରେ ସୂର୍ଯ୍ୟପୂଜା ଏକମାତ୍ର ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କର ଅଧିକାର ଥିଲା । ଏପରି ୧୦ମ ଶତାବ୍ଦୀରେ ଭାରତରେ ଶାକଦ୍ୱୀପୀ ବ୍ରାହ୍ମଣମାନେ ସୂର୍ଯ୍ୟପୂଜା କରୁଥିବାର ଅବୁରିହାନ ଦେଖିଯାଇଥିଲେ (୩) । ଖ୍ରୀ: ୧୦ମ ଶତାବ୍ଦୀରେ ଚୀନ-ପରିବ୍ରାଜକ ହିଉ, ଏନ, ସିଆଂ (ହୋଇଏଂ ସାଂ) ମୂଳସ୍ଥାନ ନଗରରେ ସୁବର୍ଣ୍ଣମୟୀ ସୂର୍ଯ୍ୟମୂର୍ତ୍ତି ଦେଖି ଯାଇଥିଲେ (୪) । "ଶାକଳଦ୍ୱୀପ ବା ଶାକଳାଦୀପ" ତୁର୍କିସ୍ଥାନର ଜୟ କରି ଖ୍ରୀ: ପୂ: ୬୦୦ ଶତ ବର୍ଷ ପୂର୍ବରେ

---

(୧) ଅର୍ଥବଗାବଲୀ, ବୌଦ୍ଧାବତାର କାବ୍ୟ ।

(୨) Fleets' Inscriptions of the Gupta Kings, Vol. III, p, 217.

(୩) Ali Bareen's India translated by E. Sachan, Vol. I. p. 121,

(୪) Journal Asiatique (Paris) 1887. Tome X. p, 70 and Cunningham's Ancient Geography of India, p, 233.

ଗୌଡ଼ନଗର ପ୍ରତିଷ୍ଠା କରନ୍ତି (୧) । ସେହିଦିନଠାରୁ ଗୌଡ଼-
ଦେଶ ବୋଲି ବିଖ୍ୟାତ ହୋଇ ଆସୁଅଛି । ଗୌଡ଼ ରାଜାଙ୍କ
ସଭାରେ ଶାକଦ୍ୱୀପୀ ବ୍ରାହ୍ମଣମାନେ ପୂଜ୍ୟ ଥିଲେ । ସୁତରାଂ
ଏହିପରି ଐତିହାସିକ ପ୍ରମାଣ ଦ୍ୱାରା ବୁଝାଗଲା ଯେ, ପ୍ରାଚୀନ
କାଳରୁ ଗ୍ରହବିପ୍ରମାନେ ଭାରତର ନାନାସ୍ଥାନରେ ବାସ କରୁ-
ଥିଲେ ଏବଂ ରାଜସଭାରେ ପୂଜ୍ୟ ବ୍ୟକ୍ତି ଥିଲେ । (ଏପରି
ଶାସ୍ତ୍ରାନ୍ତରରେ ସ୍ୱୀକୃତ କରିବା ଅବଶ୍ୟକ ।)

ଦେବର୍ଷି ନାରଦ ଯୁଧିଷ୍ଠିରଙ୍କ ରାଜସଭାରେ ଆଗମନ କରି
ରାଜ୍ୟସଂକ୍ରାନ୍ତ ନାନାବିଧ ଶୁଭାଶୁଭ ପ୍ରଶ୍ନ କଥୋପକଥନରେ
କହିଥିଲେ "ହେ ମହାରାଜ ! ତୁମ୍ଭ ରାଜ୍ୟରେ ଦୈବଜ୍ଞମାନେ
ପୂଜିତ ହୁଅନ୍ତି ତ ?" ଦୈବଜ୍ଞମାନେ ରାଜପୂଜ୍ୟ ନ ଥିଲେ
ଦେବର୍ଷି ନାରଦ ଏପରି ପ୍ରଶ୍ନ କରନ୍ତେ ନାହିଁ । ସୁତରାଂ
ଗ୍ରହବିପ୍ରମାନେ ରାଜପୂଜ୍ୟ ଥିବାରୁ ଉକ୍ତିଖିତ ପ୍ରଶ୍ନ ଉତ୍ଥାପନ
କରିଥିଲେ । ଏପରି ତ୍ରେତାଯୁଗରେ ରାବଣର ମୃତ୍ୟୁବାଣ ଆଣିବା
ସକାଶେ ହନୁମାନ ଦୈବଜ୍ଞ ବେଶରେ ମନ୍ଦୋଦରୀ ନିକଟକୁ
ଗମନ କରିଥିଲେ । ମନ୍ଦୋଦରୀ (ହନୁମାନଙ୍କୁ) ଜ୍ୟୋତିର୍ବିଦ୍
ଜାଣି ପାଦ୍ୟ ଅର୍ଘ୍ୟାଦି ଦ୍ୱାରା ପୂଜା କରିଥିଲେ । ଏଥିରୁ ଜଣା-
ଯାଉଅଛି ଯେ ବହୁଶତାବ୍ଦୀ ପୂର୍ବେ ଗ୍ରହବିପ୍ରମାନେ ରାଜପୂଜ୍ୟ
ଥିଲେ ଏବଂ ରାଜାମାନଙ୍କୁ ପରାମର୍ଷ ଦେଉଥିଲେ ; ରାଜାମାନେ
ମଧ୍ୟ ତଦନୁସାରେ ଚଳୁଥିଲେ । ସେହି ଯୁଗରେ ବୃଷ୍ଟି ଅବତାର

(୧) 'ସେଭିୟା ଓ ରଦ୍ଧାନ-ଭୂଷ-ସଦ୍ରନ" ନାମକ ମୁସଲମାନ ଇତିହାସ
ଦ୍ରଷ୍ଟବ୍ୟ । ଏହି ଇତିହାସ ଏବଂ ପ୍ରାଚୀନ ପ୍ରମାଣ ଦ୍ୱାରା ଜଣାଯାଏ ଯେ,
ଗୌଡ଼ବଙ୍ଗ ରାଜ୍ୟରେ ପ୍ରଥମେ ସୂର୍ଯ୍ୟମୂର୍ତ୍ତି ଏବଂ ପରେ ଅପରାପର ଦେବାଦେବୀର
ମୂର୍ତ୍ତି ପୂଜା ଏମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ହୁଏ ।

ଶ୍ରୀରାମଚନ୍ଦ୍ରଙ୍କର ପିତା ଦଶରଥଙ୍କୁ କୌଣସି ସମୟରେ ଶନିଗ୍ରହ ରୋହିଣୀ ନକ୍ଷତ୍ରରେ ଗମନ ହେବାରୁ ଅଯୋଧ୍ୟାରେ ଅନାବୃଷ୍ଟି ହୁଏ । ଉକ୍ତ ରାଜ୍ୟର ଜ୍ୟୋତିର୍ବିଦ୍‌ମାନେ ଅନାବୃଷ୍ଟିର କାରଣ ଜାଣିପାରି ରାଜାଧିରାଜ ଦଶରଥଙ୍କୁ ଜ୍ଞାପନ କରିଥିଲେ । ରାଜା ଦଶରଥଙ୍କ କୃତ ଶନିସ୍ତବରେ ଲେଖାଅଛି ;—

"ରଘୁବଂଶେଽତି ବିଖ୍ୟାତୋ ରାଜା ଦଶରଥଃ ପୁରା ।<br>
ଚକ୍ରବର୍ତ୍ତୀ ସ ବିଜ୍ଞେୟଃ ସପ୍ତଦ୍ୱୀପାଧିପୋଽଭବତ୍ ।<br>
କୃତ୍ତିକାନ୍ତେ ଶନିଂ ଜ୍ଞାତ୍ୱା ଦୈବଜ୍ଞୈର୍ଜ୍ଞାପିତୋହିସଃ ।<br>
ରୋହିଣୀଂ ଭେଦୟିତ୍ୱା ତୁ ଶନିର୍ଯ୍ୟାସ୍ୟତି ସାମ୍ପ୍ରତମ୍ ।

(ସ୍କନ୍ଦପୁରାଣ ।)

"ଉତ୍କଳଖଣ୍ଡ"ରେ ଲେଖାଅଛି ଯେ, ସତ୍ୟଯୁଗରେ ଇନ୍ଦ୍ରଦ୍ୟୁମ୍ନ ନାମକ ସୂର୍ଯ୍ୟବଂଶୀୟ ରାଜା ଏକ ସମୟରେ ଗ୍ରହଦୋଷରୁ ଅସୁସ୍ଥ ହୋଇଥିଲେ । ଇନ୍ଦ୍ରଦ୍ୟୁମ୍ନ ରାଜା ଉତ୍କଳ ପ୍ରଦେଶର ଦୈବଜ୍ଞଙ୍କୁ ପୁରୋହିତରୂପେ ବରଣ କରି ଗ୍ରହଯାଗ (ବା ଗ୍ରହଶାନ୍ତି) କରାଇବାରୁ ସୁସ୍ଥତା ଲାଭ କରିଥିଲେ । ( ପ୍ରମାଣାର୍ଥ ୧୬ଶ ଅଧ୍ୟାୟରେ ପ୍ରଦତ୍ତ ହୋଇଅଛି । )

ଉପରୋକ୍ତ ବିଷୟମାନଙ୍କରୁ ଉପଲବ୍ଧି ହେଉଅଛି ଯେ, ଯୁଗାନୁକ୍ରମେ ଭାରତର ନାନା ଅଂଶରେ, ଲଙ୍କାଦ୍ୱୀପ ତଥା ଓଡ଼ିଶାରେ ତେଜସ୍ୱୀ ଜ୍ୟୋତିର୍ବିଦ୍—ଗ୍ରହବିପ୍ରମାନେ ବାସ କରୁଥିଲେ । ଏପରି ଅଧିକ ବୋଲିବା ବାହୁଲ୍ୟ ମାତ୍ର ।



# ପଞ୍ଚମ ଅଧ୍ୟାୟ ।

—✽✽✽—

## ଅଗ୍ରର୍ଯ୍ୟ ବ୍ରାହ୍ମଣର ଉପାଧି ।

"ସାମ୍ବତ୍ସରୋ ଜ୍ୟୋତିଷିକୋ ଦୈବଜ୍ଞୋ ଗଣକୋଽପି ଚ ।
ଭଟ୍ଟବିପ୍ରୋ ଦ୍ୱିଜଶ୍ରେଷ୍ଠଃ ସର୍ବଶାସ୍ତ୍ରବିଶାରଦଃ ।
ଅଗ୍ରର୍ଯ୍ୟୋ ବ୍ରାହ୍ମଣେନ୍ଦ୍ରଶ୍ଚ ପଠକଃ ପାଙ୍କବେଦକଃ ।
ସୁଖୀ ଷାଖୀ ବରେଣ୍ୟୋଽଗ୍ନିଃ ଷଟ୍‌କର୍ମା ଭଟ୍ଟଭୂସୁରଃ ।
ମୌହୂର୍ତ୍ତିକଶ୍ଚ ମୌହୂର୍ତ୍ତୋ ଜ୍ଞାନୀ କାର୍ତ୍ତାନ୍ତିକୋଽପି ଚ ।
ଭଟ୍ଟାଂଶ ବ୍ରାହ୍ମଣ ନୋକ୍ତ ବ୍ରହ୍ମନାମୈକବଂଶଜ ।। (ବ୍ରହ୍ମସିଦ୍ଧାନ୍ତ)

ଅର୍ଥ ।—ସାମ୍ବତ୍ସର, ଜ୍ୟୋତିଷିକ, ଦୈବଜ୍ଞ, ଗଣକ, ଭଟ୍ଟବିପ୍ର, ଦ୍ୱିଜଶ୍ରେଷ୍ଠ, ସର୍ବଶାସ୍ତ୍ରବିଶାରଦ, ଅଗ୍ରର୍ଯ୍ୟ, ବ୍ରାହ୍ମଣେନ୍ଦ୍ର, ପଠକ, ପାଙ୍କବେଦକ, ସୁଖୀ, ଷାଖୀ, ବରେଣ୍ୟ, ଅଗ୍ନି, ଷଟ୍‌କର୍ମା, ଭଟ୍ଟଭୂସୁର, ମୌହୂର୍ତ୍ତିକ, ମୌହୂର୍ତ୍ତ, ଜ୍ଞାନୀ ଓ କାର୍ତ୍ତାନ୍ତିକ ; ଭଟ୍ଟାଂଶ ବ୍ରାହ୍ମଣଙ୍କର ଏହି ଏକୋଇଶ ପ୍ରକାର ଉପାଧି ପ୍ରଚଳିତ ଅଛି । ଏହାଛଡ଼ା ଦେଶଭେଦରେ ଅନେକ ଉପାଧି ପ୍ରଚଳିତ ହୋଇଅଛି ।

ଏ ଦେଶରେ ଭଟ୍ଟବିପ୍ରମାନଙ୍କୁ ନ୍ୟାୟରତ୍ନ, ଗ୍ରହାଗ୍ରର୍ଯ୍ୟ, ଅଗ୍ରର୍ଯ୍ୟ, ମହାପାତ୍ର, ଉପାଧ୍ୟାୟ, ଦୈବଜ୍ଞ ଓ ପଣ୍ଡିତ ଆଦି ନାନାପ୍ରକାର ଉଚ୍ଚଉପାଧି ଦ୍ୱାରା ସମ୍ମାନିତ କରନ୍ତି ।

କେହି କହନ୍ତି ଯେ "ଅଗ୍ରର୍ଯ୍ୟ" ବ୍ରାହ୍ମଣ ଜାତିର ଉପାଧି, ଗ୍ରହବିପ୍ର ଜାତିରେ ବ୍ୟବହୃତ ହୋଇ ପାରେନାହିଁ । ସୁତରାଂ ସାଧାରଣଙ୍କ ବୋଧାର୍ଥେ ଅଗ୍ରର୍ଯ୍ୟ ଶବ୍ଦର ଅର୍ଥ ନିମ୍ନରେ ପ୍ରଦତ୍ତ ହେଲା ।

ଅଗ୍ରର୍ଯ୍ୟ—ଅଗ୍ର ପୂର୍ବକାରୁ ଋ ଧାତୋର୍ଣ୍ୟତ୍ ପ୍ରତ୍ୟୟ କରି "ଅଗ୍ରର୍ଯ୍ୟ" ଏହି ପଦଟି ନିଷ୍ପନ୍ନ ହୁଏ । ଋ ଧାତୁର ଅର୍ଥ 'ଋ ଗତୌ

ଲକ୍ଷଣେ ତ' ଅର୍ଥାତ୍ ତତ୍ ଧାତୁର ଅର୍ଥ ଦେବା ଲକ୍ଷଣ ବୁଝାଏ । ଶବ୍ଦ-କଳ୍ପଦ୍ରୁମରେ ଲେଖାଅଛି "ଅର୍ଚ୍ଚେ ଅପନେ ଚ" ଅର୍ଥାତ୍ ପୂଜନରେ ଓ ଅପନରେ । ଗତି ଶବ୍ଦର—ଯାତ୍ରା, ଦଶା, ଅବସ୍ଥା, ପଥ, ଉପାୟ, ଜ୍ଞାନ ଇତ୍ୟାଦି ; ଭିନ୍ନ ଶବ୍ଦରେ ଖାଦ୍ୟ ବୁଝାଏ । ଏଥିରୁ ଜଣାଯାଉଅଛି ଯେ, ଯାହାଦ୍ୱାରା ଆମ୍ଭମାନଙ୍କର ଶରୀର ରକ୍ଷାର୍ଥେ ଆହାର, ବିହାର, ଗମନ, ପଥ, ଦଶା, ଉପାୟ ପ୍ରଭୃତି ବିଷୟ ଶିକ୍ଷା ପାଇବାକୁ ହୁଏ; ସେ ବ୍ୟକ୍ତି ଅଗ୍ରର୍ଯ୍ୟ । ଅତଏବ ଅଗ୍ରର୍ଯ୍ୟ ଶବ୍ଦଟି ଅନ୍ୟ କୌଣସି ଶବ୍ଦ ପରେ ବ୍ୟବହାର ହେଲେ ଭିନ୍ନ ଅର୍ଥ ପ୍ରକାଶ ପାଏ । ଯେପରି ବେଦାଗ୍ରର୍ଯ୍ୟ, କୁଳାଗ୍ରର୍ଯ୍ୟ, ସାହିତ୍ୟାଗ୍ରର୍ଯ୍ୟ ଇତ୍ୟାଦି । କିନ୍ତୁ ଅଗ୍ରର୍ଯ୍ୟ ଉପାଧିଟି ଏକମାତ୍ର ଗ୍ରହବିପ୍ର ଜାତିର ଉପାଧି । ଅଗ୍ରର୍ଯ୍ୟ ଶବ୍ଦ ଗୁରୁ ଭିନ୍ନ ଅନ୍ୟ କାହାରିକୁ ବୁଝାଏ ନାହିଁ । ଉତ୍କଳ ଜନସାଧାରଣଙ୍କ ହାତରେ ଖଡ଼ି ଦେଇ ବିଦ୍ୟାରମ୍ଭ ଏବଂ ପିଲାମାନଙ୍କୁ ଶିକ୍ଷା ଦେଇ ଆସୁଥିବାରୁ ଶିକ୍ଷକ—ଗୁରୁ—ଅଗ୍ରର୍ଯ୍ୟ ବୋଲି ପରିଚିତ । ସୁତରାଂ ଗ୍ରହବିପ୍ର ଜାତି ଅତି ପ୍ରାଚୀନ କାଳରୁ ଗୁରୁକାର୍ଯ୍ୟର ପଥପ୍ରଦର୍ଶକ । ଗର୍ଭାଧାନଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯେତେ କାର୍ଯ୍ୟ କଲାପ ଏବଂ ସମସ୍ତ ପୂଜାପର୍ବାଦି ଅତି ନିୟମ ବ୍ୟବସ୍ଥା (ପଞ୍ଜିକାରେ ଲିପିବଦ୍ଧ) ଗ୍ରହବିପ୍ରମାନେ ପ୍ରକାଶ କରି ଆସୁଥିବାରୁ ଜନସାଧାରଣଙ୍କ ଜ୍ଞାତବ୍ୟ ବିଷୟ ସୁଶିକ୍ଷା ଲାଭ ହେଉଥିବାରୁ ଏବଂ ସାଧାରଣଙ୍କର ଉପକାର ସାଧନ କରୁଅଛନ୍ତି ବୋଲି ଶାସ୍ତ୍ରକାରମାନେ ଏମାନଙ୍କୁ ଅଗ୍ରର୍ଯ୍ୟ ଉପାଧି ପ୍ରଦାନ କରିଅଛନ୍ତି । ଅନେକ ଶାସ୍ତ୍ରରେ ପ୍ରମାଣ ଥିଲେହେଁ ଏଠାରେ କେବଳ ଗୋଟିଏ ପ୍ରମାଣ ଉଦ୍ଧୃତ ହେଲା ।

"ଅଗ୍ରର୍ଯ୍ୟସ୍ୟ ମୁଖାଦେବତଚ୍ଛାସ୍ତ୍ରଂ ଶୃଣୁୟାଦ୍‌ବୁଧଃ ।
ସମ୍ପ୍ରଦାୟେନ ଯୋଽଭ୍ୟସ୍ତସ୍ମିନ୍ ଶାସ୍ତ୍ରେ ମହାମତିଃ ।"

( ବୃହତ୍ ପରାଶର ଉତ୍ତରଖଣ୍ଡେ ୧ମ ଅଧ୍ୟାୟ । )

ଅର୍ଥ ।—ଯେଉଁ ଗ୍ରହବ୍ରାହ୍ମଣମାନଙ୍କର କୁଳକ୍ରମାନୁସାରେ "ଅଗ୍ରର୍ଯ୍ୟ" ଉପାଧି ପ୍ରଚଳିତ, ସେହି ପଣ୍ଡିତମାନଙ୍କଠାରୁ ସୁଧୀ ବ୍ୟକ୍ତିମାନେ ଜ୍ୟୋତିଃଶାସ୍ତ୍ର ଶ୍ରବଣ କରିବେ ।

ଏଥିରୁ ପାଠକେ ବୁଝିବେ ଯେ, ଅଗ୍ରର୍ଯ୍ୟ ଉପାଧିଧାରୀ ଗ୍ରହବିପ୍ରଙ୍କଠାରୁ ଜ୍ୟୋତିଷଶାସ୍ତ୍ର ଶ୍ରବଣ କରିବା ବିଧେୟ ।

ଛତ୍ରବସ୍ତ୍ର ଜାତିର ଅଗ୍ର୍ୟ୍ୟ ଉପାଧି ପ୍ରାଚୀନ କାଳରୁ ରହିଅଛି । ଅଗ୍ର୍ୟ୍ୟ କହିଲେ କେବଳ ଛତ୍ରବସ୍ତ୍ରଙ୍କୁ ବୁଝାଇବ, ଅନ୍ୟ କାହାରିପ୍ରତି ନୁହେଁ । ( ବ୍ରହ୍ମଯାମଳ ଓ ବ୍ରହ୍ମସିଦ୍ଧାନ୍ତ ଗ୍ରନ୍ଥର ୪ର୍ଥ, ୫ମ ଅଧ୍ୟାୟରେ ବିଶେଷ ବର୍ଣ୍ଣିତ ହୋଇଅଛି । )

ନୈୟାୟିକ ।—ନ୍ୟାୟଂ ଶାସ୍ତ୍ରଂ ବେତ୍ତି ବା ଅଧୀତେ ବା ନୈୟାୟିକଃ । ଅର୍ଥାତ୍ ଯେଉଁ ବ୍ୟକ୍ତି ନ୍ୟାୟଶାସ୍ତ୍ର ଅବଗତ ଅଛନ୍ତି ଏବଂ ସେ ସମ୍ବନ୍ଧରେ ଯେଉଁମାନେ ଅନ୍ବେଷଣା କରନ୍ତି, ସେମାନଙ୍କୁ ନୈୟାୟିକ ବୋଲାଯାଏ । ନୈୟାୟିକ ଛତ୍ରବସ୍ତ୍ରଙ୍କର ଉପାଧି ଅଟେ । ଜ୍ୟୋତିଃଶାସ୍ତ୍ର ସୂକ୍ଷ୍ମଭାବରେ ସ୍ଥିର କରିବାକୁ ହେଲେ ନ୍ୟାୟ ଶାସ୍ତ୍ର ପଢ଼ିବାକୁ ହୁଏ । କାରଣ, "ଶିବୋକ୍ତ ପଞ୍ଚପକ୍ଷୀ" ଗ୍ରନ୍ଥର ୧୭ଶ ବଚନ ଟୀକେ ପ୍ରକାଶଚନ୍ଦ୍ର ସେହି ଟୀକାରେ ଲେଖାଅଛନ୍ତି :—

"ଘଟାକାଶପଟାକାଶଭେଦେନ ଘୃତକଷ୍ଟଚନ୍ଦ୍ରାଦିବ୍ୟାକାମା-ସ୍ଥିତଜ୍ଞାନାର୍ଥଂ ପ୍ରୟୋଜନାତ୍ ଏତତ୍ ପ୍ରୟୋଜନଂ ।"

ଘଟାକାଶ ଓ ପଟାକାଶ କାହାକୁ କୁହନ୍ତି ଏବଂ ତା' ପ୍ରକାର ହୁଏ, ତାହା ନ୍ୟାୟଶାସ୍ତ୍ର ଜଣା ନ ଥିଲେ ଉକ୍ତ ବିଷୟ ଭଲ ବୁଝାଯାଏ ନାହିଁ । ଏହି କାରଣରୁ ଜ୍ୟୋତିର୍ବିଦ୍‌ମାନେ ନ୍ୟାୟ ଶାସ୍ତ୍ର ପଢ଼ିଥାନ୍ତି ।

ସୁତରାଂ ଏ ଜଗତର ଛତ୍ରବସ୍ତ୍ରମାନଙ୍କର କୁଳକ୍ରମାନୁସାରେ "ନୈୟାୟିକ" ଉପାଧି ପ୍ରବର୍ତ୍ତିତ ହୋଇ ଆସୁଅଛି । ( ପାଠକ-ମାନଙ୍କର ପ୍ରତ୍ୟେକ ଉପାଧିର ଅର୍ଥ ଜାଣିବାର ଆବଶ୍ୟକ ହେଲେ "ଅଗ୍ର୍ୟ୍ୟ ବ୍ରାହ୍ମଣ" ନାମକ ପୁସ୍ତକର ୧୫ଶ ଅଧ୍ୟାୟ ଦ୍ରଷ୍ଟବ୍ୟ । )



# ଷଷ୍ଠ ଅଧ୍ୟାୟ ।

—•※※※•—

## ଗ୍ରହବିପ୍ର ଜାତିର ସଂସ୍କାର ।

"ଜନ୍ମନା ଜାୟତେ ଶୂଦ୍ରଃ ସଂସ୍କାରୈର୍ଦ୍ୱିଜଉଚ୍ୟତେ ।
ବେଦାଭ୍ୟାସେ ଭବେଦ୍ୱିପ୍ରୋ ବ୍ରହ୍ମଜାନାତି ବ୍ରାହ୍ମଣଃ ।"

(ମନୁସଂହିତା ।)

ଅର୍ଥ ।—ବ୍ରାହ୍ମଣକୁଳରେ ଜନ୍ମଗ୍ରହଣ କରି ଯେପର୍ଯ୍ୟନ୍ତ ସଂସ୍କାର ବା ଉପନୟନ ହୋଇ ନ ଥାଏ, ସେପର୍ଯ୍ୟନ୍ତ ଶୂଦ୍ରତ୍ୱ ଥାଏ, ଉପନୟନ ହେଲେ ଦ୍ୱିଜତ୍ୱ ଘଟେ, ବେଦ ଅଭ୍ୟାସକଲେ ବିପ୍ରତ୍ୱ ଏବଂ ବ୍ରହ୍ମଜ୍ଞାନ ଜନ୍ମିଲେ ବ୍ରାହ୍ମଣତ୍ୱ ଘଟଥାଏ ।

ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କ ପରି ଗ୍ରହବିପ୍ରମାନଙ୍କର ମଧ୍ୟ ଉପନୟନାଦି ସଂସ୍କାର ବିଦ୍ୟମାନ ଅଛି । ଅନ୍ୟାନ୍ୟ ବ୍ରାହ୍ମଣମାନେ କେବଳ ଗାୟତ୍ରୀମନ୍ତ୍ରରେ ଦୀକ୍ଷିତ କିନ୍ତୁ ଗ୍ରହବିପ୍ରମାନେ ଗାୟତ୍ରୀ ମନ୍ତ୍ରରେ ଦୀକ୍ଷିତ ହେବା ପରେ ପୁନଃ ନବଗ୍ରହଙ୍କ ମନ୍ତ୍ରରେ ଦୀକ୍ଷିତ ହୁଅନ୍ତି । ଏହି ପାର୍ଥକ୍ୟ ହେତୁରୁ ଅନ୍ୟ ବ୍ରାହ୍ମଣମାନଙ୍କର ଗ୍ରହପୂଜା ଓ ଗ୍ରହଦାନାଦି ଗ୍ରହଣ କରିବାର ଅଧିକାର ନାହିଁ । ଯଥା ବ୍ରହ୍ମସିଦ୍ଧାନ୍ତେ ;—"ନାଧିକୁର୍ବନ୍ତି ତେ ବିପ୍ରା ଗ୍ରହତୋଷଣ କର୍ମଣି । ଯେଽପ୍ରାପ୍ତ ସଂସ୍କାର ଦୀକ୍ଷା ନବଧା ଜପଲକ୍ଷଣେ ।" ଇତ୍ୟାଦି । ଶାସ୍ତ୍ରରେ ଗ୍ରହବିପ୍ରମାନଙ୍କର ବେଦାଧ୍ୟାପନ ପ୍ରଭୃତି ବ୍ରାହ୍ମଣୋଚିତ ବୃତ୍ତି ଦେଖାଯାଏ ।

"ଜ୍ୟୋତିଷାଧ୍ୟାପନଂ ପୂଜା ବେଦଶାସ୍ତ୍ରପ୍ରକୀର୍ତ୍ତନଂ ।
ଯଜ୍ଞପ୍ରତିଗ୍ରହୋ ଭିକ୍ଷାଷଡ଼୍‌ଚିହ୍ନ ଦ୍ୱିଜଲକ୍ଷଣମ୍ । (ଗ୍ରହଯାମଳ

ଅର୍ଥ ।—ଜ୍ୟୋତିଷାଧ୍ୟାପନ, ଗ୍ରହଯଜ୍ଞ (ଗ୍ରହଶାନ୍ତି) ଗ୍ରହ-ପୂଜା, ବେଦଶାସ୍ତ୍ର କଥନ, ଦାନଗ୍ରହଣ ଓ ଭିକ୍ଷା ; ଏହି ଛଅ ;

ଗ୍ରହବିପ୍ରଙ୍କର ନିର୍ଦ୍ଦିଷ୍ଟ ବୃତ୍ତି । ଗ୍ରହବିପ୍ରଜାତି ଏହି ଷଡ଼ବିଧ ବୃତ୍ତି ଦ୍ୱାରା ଜୀବିକା ନିର୍ବାହ କରି ଆସୁଅଛନ୍ତି ।

"ଷଟ୍‌କର୍ମାଣି ବିଜାନୀୟାତ୍ ଧର୍ମାଦୈଶ୍ଚାର୍ଥକାରଣମ୍ ।
ଶୁଶ୍ରୂଷା କାରଣଂ ତେଷୁ ଵିବିଧଂ ପରିକୀର୍ତ୍ତିତମ୍ ।"

ଅର୍ଥ ।—ବ୍ରାହ୍ମଣମାନଙ୍କର ଛଅ କର୍ମ ସେମାନଙ୍କର ଧର୍ମର କାରଣ, ଅର୍ଥର କାରଣ ଓ ସେବାର କାରଣ ବୋଲି ଜାଣିବ । ଗ୍ରହବିପ୍ରମାନଙ୍କର ବୃତ୍ତି ସମ୍ବନ୍ଧରେ ବୃହଦ୍ଧର୍ମପୁରାଣ ଉତ୍ତରଖଣ୍ଡ ୧୪ଶ ଅଧ୍ୟାୟରେ ଲେଖାଅଛି :—

ଗଣକାୟ ଦଦୁସ୍ତେଷୁ ଜ୍ୟୋତିଃଶାସ୍ତ୍ରାଣି ସର୍ବଶଃ ।
ଗ୍ରହବିପ୍ରସ୍ତ ଭୁଞ୍ଜନ୍ତୁ ପୂଜା ହୋମସମର୍ପଣମ୍ । ୨୬ ।

ଅର୍ଥ —ସମସ୍ତ ଜ୍ୟୋତିଷଶାସ୍ତ୍ର ଗଣକଙ୍କ ହସ୍ତରେ ପ୍ରଦତ୍ତ ହେଲା ଏବଂ ଗ୍ରହମାନଙ୍କର ପୂଜା ଓ ହୋମାଦି କାର୍ଯ୍ୟ ଗ୍ରହବିପ୍ର-ମାନଙ୍କର ବୃତ୍ତିରୂପେ ନିର୍ଦ୍ଦିଷ୍ଟ ହେଲା । (ଗ୍ରହବିପ୍ରମାନେ ଅତି ପ୍ରାଚୀନ କାଳରୁ ଆଜପର୍ଯ୍ୟନ୍ତ ସ୍ୱ ବୃତ୍ତିରେ ଚଳିଆସୁଅଛନ୍ତି ତାହା ବିଶେଷ ଉଲ୍ଲେଖ ଅନାବଶ୍ୟକ ଅଟେ ।)

## ସପ୍ତମ ଅଧ୍ୟାୟ ।

### ଗ୍ରହବିପ୍ରଙ୍କର ଅଧିକାର ।

"ଗ୍ରହାନୁଦ୍ଦିଶ୍ୟ ଯଦ୍ଦାନଂ ଗ୍ରହବିପ୍ରାୟ ତୁର୍ପୟେତ୍ ।"
(ବ୍ରହ୍ମସିଦ୍ଧାନ୍ତ ।)

ଅର୍ଥ ।—ଗ୍ରହଙ୍କ ଉଦ୍ଦେଶ୍ୟରେ ଯେଉଁସବୁ ଦାନ, ତାହା ସମସ୍ତ ଗ୍ରହବିପ୍ରାହ୍ମଣମାନଙ୍କୁ ପ୍ରଦାନ କରିବ ।

"ହୋମୋ ମନ୍ତ୍ରଜପଃ କାର୍ଯ୍ୟୋ ଗ୍ରହାଣାଂ ଗ୍ରହବିପ୍ରତଃ ।
ଦାନ ତଦ୍ଗ୍ରହବିପ୍ରାୟ ଗ୍ରହବ୍ରାହ୍ମଣ ଭୋଜନଂ ।

(ରୁଦ୍ରଯାମଳ ୨୭ ପଟଳ ।)

ଅର୍ଥ ।—ଗ୍ରହଙ୍କର ହୋମ, ମନ୍ତ୍ର ଓ ଜପ କାର୍ଯ୍ୟାଦି ଗ୍ରହବିପ୍ରଙ୍କ ଦ୍ୱାରା ସମ୍ପନ୍ନ କରାଇବ ; ଗ୍ରହମାନଙ୍କର ଦାନପତ୍ର ଗ୍ରହବିପ୍ରଙ୍କୁ ଦେବ ଏବଂ ଗ୍ରହବିପ୍ରଙ୍କୁ ଭୋଜନ କରାଇବ ।

ଗ୍ରହବିପ୍ରାସ୍ତୁ ଗଣକା ବୁଧ ପୂଜାପ୍ରୀତିପ୍ରବୃଦ୍ଧିଦେ ।

(ବୃହତ୍ ପୁରାଣ ଉତ୍ତରଖଣ୍ଡ ୧୦ମ ଅଃ ।)

ଅର୍ଥ ।—ଗଣକ ଗ୍ରହବିପ୍ରମାନେ ଗ୍ରହମାନଙ୍କର ପୂଜା କଲେ ସେମାନେ ପ୍ରୀତ ହୋଇଥାନ୍ତି ।

ଗ୍ରହବିପ୍ରୋ ମହେଶାନ ବ୍ରହ୍ମା ହୋତା ପୁସ୍ତକୀ ।
ଗ୍ରହାଧ୍ୱରେ ସଦସ୍ୟଃ ସୋଽନ୍ୟଥା ବିଘ୍ନଃ ପ୍ରଜାୟତେ ।

(ରୁଦ୍ରଯାମଳ ।)

ଅର୍ଥ । - ଗ୍ରହବିପ୍ରମାନେ ବ୍ରହ୍ମା, ହୋତା, ପୁସ୍ତକଧାରୀ (ଆଚାର୍ଯ୍ୟ) ଓ ସଦସ୍ୟ ହୋଇ ଗ୍ରହଯଜ୍ଞ କରିବେ, ଅନ୍ୟଥା ଗ୍ରହଯଜ୍ଞର ଫଳ ହୁଏନାହିଁ ।

ଅତସ୍ତୁ ସାଧକେନୈବ କର୍ତ୍ତବ୍ୟଂ ଗ୍ରହପୂଜନଂ ।
ଅନ୍ୟଥା ଗ୍ରହଦୋଷେଣ ନ କଦାଚିତ୍ ଫଳଂ ଭବେତ୍ ॥

( ପ୍ରାଚୀନ ଜ୍ୟୋତିଷାମୃତ ବାଚୀତନ । )

ଅର୍ଥ । — ଅତଏବ ଗ୍ରହପୂଜକ ଗ୍ରହବିପ୍ରଙ୍କ ଦ୍ୱାରା ଗ୍ରହପୂଜା କରିବ, ନଚେତ୍ ଗ୍ରହପୂଜାର କୌଣସି ଫଳ ହୁଏନାହିଁ ।

ତଦୁକ୍ତ ଲିଙ୍ଗିନାଂ ପଶ୍ଚାଦ୍ ଭୋଜନଂ ଦାନମାଚରେତ୍ ।
ନାନାବସ୍ତ୍ର ବିଶେଷୈଶ୍ଚ ତଥା ମିଷ୍ଟାନ୍ନପାନକୈଃ ।
ଯାବତ୍ ଭବନ୍ତି ସନ୍ତୁଷ୍ଟା ସ୍ତାବତ୍ ସମ୍ପାପ୍ୟ ପୂଜୟେତ୍ ।
ତୁଷ୍ଟୀଂ ଯାନ୍ତି ନ ସନ୍ଦେହଃ ପୀଡ଼ାଂ ତ୍ୟକ୍ତ୍ୱା ନବଗ୍ରହାଃ । ବୃଃ ଜ୍ୟୋ

ଅର୍ଥ ।—ଗ୍ରହବିପ୍ରମାନେ ଗ୍ରହମାନଙ୍କୁ ପୂଜା କରନ୍ତି, ତେଣୁ ଗ୍ରହବିପ୍ରଙ୍କ ପ୍ରତି ଗ୍ରହମାନେ ସନ୍ତୁଷ୍ଟ ଥାଆନ୍ତି । ଯେଉଁବ୍ୟକ୍ତି ଗ୍ରହବିପ୍ରଙ୍କ ପ୍ରତି ସନ୍ତୁଷ୍ଟ ହୋଇ ଗ୍ରହଦାନ ଦେଇ ଗ୍ରହବିପ୍ରଙ୍କୁ ଭୋଜନ କରାନ୍ତି, ତାହାଙ୍କର ନବଗ୍ରହଜନିତ ପୀଡ଼ା ଦୂରହୁଏ, ଏଥିରେ କିଛି ସନ୍ଦେହ ନାହିଁ ।

ଗ୍ରହାଣାଂ ଲୋକପାଳାନାଂ କ୍ରୂରଭୂତାଦି କସ୍ୟ ଚ ।
ମାତୃକାନାଂ ଯୋଗିନୀନାଂ ଗଣେଶସ୍ୟ ସୁରେଶ୍ୱରି ॥
ତିଥିନକ୍ଷତ୍ରଯୋଗାନାଂ ବାରାଣାଂ କରଣସ୍ୟ ଚ ।
ବାସୁଦେବସ୍ୟ ଯଦ୍ଦାନଂ ଗ୍ରହବିପ୍ରାୟ ଚାର୍ପୟେତ୍ ॥
ଗ୍ରହେ ଦେୟାନି ଦାନାନି ଗ୍ରହେ ଦେୟାଚ ଦକ୍ଷିଣା ।
ଗ୍ରହବିପ୍ରାୟ ଦାତବ୍ୟା ଅନ୍ୟଥା ନିଷ୍ଫଳୀଭବେତ୍ ॥
ଲୋଭାତ୍ ଗୃହ୍ଣାତି ଯୋ ବିପ୍ରୋ ଜ୍ଞାନତୋଽଜ୍ଞାନତୋଽପିବା
ଜନ୍ମନୀହ ଦରିଦ୍ରଃ ସ୍ୟାତ୍ ମୃତେ ଚ ନରକଂ ବ୍ରଜେତ୍ ॥
( ଗ୍ରହଯାମଳ । )

ଅର୍ଥ ।—ଗ୍ରହଦାନ, ଲୋକପାଳାଦି, କ୍ରୂରଭୂତାଦି, ମାତୃକା, ଯୋଗିନୀ, ଗଣେଶଙ୍କର ପୂଜାଦ୍ରବ୍ୟ, ତିଥି, ନକ୍ଷତ୍ର, ଯୋଗ, ବାର ଓ କରଣ ବିଶୁଦ୍ଧି ନିମନ୍ତେ ଦାନ ଏବଂ ବାସୁଦେବଙ୍କ ଉଦ୍ଦେଶ୍ୟରେ ଯେଉଁସବୁ ଦାନ, ତାହା ଗ୍ରହବିପ୍ରଙ୍କୁ ଅର୍ପଣ କରିବ । ଅନ୍ୟଥା କଲେ କ୍ରିୟା ନିଷ୍ଫଳ ହେବ । ଗ୍ରହବିପ୍ର ଭିନ୍ନ ଯେଉଁ ବ୍ରାହ୍ମଣ ଲୋଭରେ ବଶୀଭୂତ ହୋଇ ଜ୍ଞାନତଃ ବା ଅଜ୍ଞାନ ବଶତଃ ଏହିସବୁ ଦାନ ଗ୍ରହଣ କରନ୍ତି, ସେହି ବ୍ରାହ୍ମଣ ଇହ-ଜନ୍ମରେ ଦରିଦ୍ରହୁଅନ୍ତି ଏବଂ ମୃତ୍ୟୁପରେ ନରକକୁ ଗମନକରନ୍ତି ।

ଗ୍ରହଦାନ ବ୍ରାହ୍ମଣଙ୍କୁ ଦେବା ନିଷେଧ ।

ଗ୍ରହଦାନଂ ଦ୍ୱିଜାତିଭ୍ୟଃ ଯଃ ସ୍ନେହାଦ୍ଧିପ୍ରଯଚ୍ଛତି ।

ଅପିତୁଷ୍ଟାଗ୍ରହାସ୍ତସ୍ୟ ଦାତୁରପୂର୍ବନ କ୍ଷୟଂ ।   ( ଗ୍ରହଯାମଳ )

ଅର୍ଥ ।—ଯେଉଁବ୍ୟକ୍ତି ଦରିଦ୍ରତାବଶରେ ଗ୍ରହବିପ୍ରଙ୍କୁ ଗ୍ରହଦାନ ନ ଦେଇଥାନ୍ତି, ଗ୍ରହମାନେ ତାହାପ୍ରତି ରୁଷ୍ଟ ହୋଇ ଅପୂ ଧନକ୍ଷୟ କରନ୍ତି ।

ଗ୍ରହୋଦ୍ଦେଶେନ ଯଦ୍ଦାନଂ ଗ୍ରହବିପ୍ରାୟ ତଦର୍ପୟେତ୍ ।
ଦତ୍ତେଽନ୍ୟସ୍ମୈ ନ ହି ଫଳତ୍ୱଂ ବ୍ୟତ୍ୟସ୍ତସ୍ୟ ଜାୟତେ ॥ ବ୍ରହ୍ମବୈବର୍ତ୍ତ

ଅର୍ଥ ।—ଗ୍ରହଙ୍କ ଉଦ୍ଦେଶ୍ୟରେ ଯେଉଁସବୁ ଦ୍ରବ୍ୟ ଦାନ କରିବ, ସେସମସ୍ତ ଗ୍ରହବ୍ରାହ୍ମଣମାନଙ୍କୁ ଦେବ । ଯଦ୍ୟପି (ଭ୍ରମ-ବଶତଃ) ସେହିସବୁ ଦାନ-ସାମଗ୍ରୀ ଅନ୍ୟ ବ୍ରାହ୍ମଣମାନଙ୍କୁ ପ୍ରଦାନ କରିଯାଏ, ତାହା ସମସ୍ତ ବିଫଳ ହୁଏ ।

ଗ୍ରହବ୍ରାହ୍ମଣଭିନ୍ନା ଯେ ବିପ୍ରାଃ କୁର୍ଯ୍ୟୁଃ ଗ୍ରହସ୍ତୁତିଂ ।
ଅନ୍ଧତାମିସ୍ରାଖ୍ୟେ ନରକେ ପତନ୍ତ୍ୟାହୂତ ସପ୍ଲବ ॥ (ବ୍ରହ୍ମବୈବର୍ତ୍ତ ।)

ଅର୍ଥ ।—ଗ୍ରହବିପ୍ର ଭିନ୍ନ ଅନ୍ୟାନ୍ୟ ବ୍ରାହ୍ମଣ ଯଦ୍ୟପି ଗ୍ରହମାନଙ୍କର ଗତିବିଧି ଚର୍ଚ୍ଚା, ଅଙ୍କଗଣନା ପ୍ରଭୃତି (ଗ୍ରହସମ୍ବନ୍ଧୀୟ) କାର୍ଯ୍ୟ କଲେ, ସେମାନେ ଚରଷ୍ଟନ ସକାଶେ ତାମିସ୍ର ନାମକ ନରକରେ ନିଶ୍ଚୟ ବାସ କରିବେ ।

ପୁଷ୍କରଦୋଷ ।—ପୁଷ୍କରଦୋଷରେ ଯେ ଦ୍ରବ୍ୟମାନଙ୍କ ହାନି ହୁଏ, ତାହା ପ୍ରାୟ ସମସ୍ତଙ୍କୁ ବିଦିତଅଛି ଯେ ;—

ବାରେ ଶଯ୍ୟା ଘୃତଂ ହନ୍ତି ତିଥୌ ଗୋଧନମେବଚ ।
ନକ୍ଷତ୍ରେ ଗୋତ୍ରହାନିଃ ସ୍ୟାଦ୍ ବାସ୍ତୁବୃକ୍ଷୋ ନ ଜୀବତି ।
( ଭ୍ରଦ୍ରାମଳ । )

ଅର୍ଥ ।—ପୁଷ୍କରଯୋଗ ବାର-ଦୋଷରେ ଶଯ୍ୟା ଓ ଘୃତ-ହାନି, ତିଥିଦୋଷରେ ଗୋ ଓ ଧନହାନି ଏବଂ ନକ୍ଷତ୍ରଦୋଷରେ ବଂଶ ଓ ବାସ୍ତୁବୃକ୍ଷ ହାନି ଅନିବାର୍ଯ୍ୟ ।

ଯେ ପୁଷ୍କରକ୍ଷେତ୍ରରେ ଏରୂପ କଷ୍ଟକର ହୋଇଥାଏ, ସେହି ଦୋଷ ନିବାରଣ କରିବାରେ ସମର୍ଥ ହୁଏ ?

ପୁଷ୍କରାଧ୍ୱରକେ ଦେବ ହୋତା ବ୍ରହ୍ମା ଚ ପୁସ୍ତକୀ ।
ଗଦସ୍ୟୋ ଗ୍ରହଭୂଦେବୋଽନ୍ୟଥା ନିଷ୍ଫଳାକ୍ରିୟା ।
ଗ୍ରହବିପ୍ରେତରୋ ଯସ୍ତୁ ବ୍ରାହ୍ମଣୋ ଲୋଭମୋହିତଃ ।
ଗୃହୀତ୍ୱା ପୁଷ୍କରଦ୍ରବ୍ୟ ପ୍ରୟାତି ଘୋର କଲ୍ମିଷଂ ।

( ଗ୍ରହଯାମଳ । )

ଅର୍ଥ ।—ପୁଷ୍କର ଯଜ୍ଞରେ କେବଳ ଗ୍ରହବିପ୍ରମାନଙ୍କ ଦ୍ୱାରା ହୋମ, ମନ୍ତ୍ର, ଜପ, ତନ୍ତ୍ରଧାରକତାଦି ସମସ୍ତ କାର୍ଯ୍ୟ ସମ୍ପନ୍ନ ହେବତ । ଏହା ଅନ୍ୟଥା କଲେ କ୍ରିୟା ନିଷ୍ଫଳ ହୁଏ । ଯଦ୍ୟପି ଗ୍ରହବିପ୍ର ଛଡ଼ା ଅନ୍ୟକୌଣସି ବ୍ରାହ୍ମଣ ଲୋଭରେ ମୁଗ୍ଧ ହୋଇ ପୁଷ୍କରଦ୍ରବ୍ୟ ଗ୍ରହଣ କରେ, ତାହାହେଲେ ସେ ଘୋର ନରକରେ ପ୍ରବେଶ କରେ ।

ସୂର୍ଯ୍ୟଙ୍କର ପୂଜାଦ୍ରବ୍ୟ—ସୂର୍ଯ୍ୟଦେବଙ୍କ ପୂଜା ଦ୍ରବ୍ୟରେ ଗ୍ରହବିପ୍ରମାନେ ଅଧିକାରୀ ଅଟନ୍ତି । ଭବିଷ୍ୟପୁରାଣ ବ୍ରାହ୍ମପର୍ବ ୧୧୭ ଅଧ୍ୟାୟରେ ଲେଖାଅଛି ;—

ଯନ୍ମଦୀୟଂ ଭବେତ୍ କିଞ୍ଚିଦ୍ଗ୍ରାମେ ବା ନଗରେ କ୍ୱଚିତ୍ ।
ତସ୍ୟ ସର୍ବସ୍ୟ ରାଜେନ୍ଦ୍ର ! ମଦୀୟସ୍ୟ ସମନ୍ତତଃ ।
ଅଧୀପା ଭୋଜକାଃ ସର୍ବେ ନାନ୍ୟେ ବର୍ଣ୍ଣାଦୟୋ ନୃପ ।

ଅର୍ଥ ।—ହେ ରାଜେନ୍ଦ୍ର ! ଗ୍ରାମରେ ବା ନଗରରେ ମୋର (ସୂର୍ଯ୍ୟଦେବଙ୍କର) ଯାହାକିଛି ପୂଜାଦ୍ରବ୍ୟ ହେବ, ସେହିସବୁ ଦ୍ରବ୍ୟରେ ଭୋଜକ (ଗ୍ରହବିପ୍ର)ମାନେ ଅଧିକାରୀ ହେବେ । ଅନ୍ୟାନ୍ୟ ବ୍ରାହ୍ମଣମାନେ ମୋର ପୂଜା ଦ୍ରବ୍ୟରେ ଅଧିକାରୀ ନୁହନ୍ତି ।

ଯଥାଧିକାରୀ ପୁତ୍ରସ୍ତୁ ପିତୃଦ୍ରବ୍ୟସ୍ୟ ବୈ ଭବେତ୍ ।
ତଥା ମଦୀୟ ବସ୍ତୁସ୍ୟ ଶାକଳାଃ ସ୍ୱାର୍ଣ୍ଣି ସଂଶୟଃ ।

ଅର୍ଥ ।— ପୁତ୍ର ଯେପରି ପିତୃ ଦ୍ରବ୍ୟରେ ଅଧିକାରୀ, ଶାକଳ ବ୍ରାହ୍ମଣମାନେ ସେହିପରି ମୋର ପୂଜା-ଦ୍ରବ୍ୟରେ ଅଧିକାରୀ ହୁଅନ୍ତି ।



# ଅଷ୍ଟମ ଅଧ୍ୟାୟ ।

## ଗ୍ରହବିପ୍ରଙ୍କର ମାହାତ୍ମ୍ୟ ।

ଗ୍ରହବିପ୍ରମାନେ ପ୍ରକୃତ ବ୍ରାହ୍ମଣ, ତନ୍ନିମିତ୍ତେ ତାହାର ନିଶ୍ଚିତ ପ୍ରମାଣ ପ୍ରଦତ୍ତ ହୋଇଅଛି । ଏତଦ୍ଭିନ୍ନ ସାଧାରଣଙ୍କ ଗୋଚରାର୍ଥେ ମହାତ୍ମ୍ୟ ସମ୍ବନ୍ଧରେ କେତୋଟି ସୂକ୍ଷ୍ମ ପ୍ରମାଣ ଉଦ୍ଧୃତ କରୁଅଛୁ ; ଏହାଦ୍ୱାରା ଭ୍ରାନ୍ତଧାରଣା ଦୂରହେଲେ ଉପକୃତ ହେବୁଁ ।

## ବେଦାଙ୍ଗ ଶାସ୍ତ୍ରର ନାମ ।

ଋଗ୍ବେଦ ୧ମ ସ୍ତୋତ୍ରରେ ବେଦର ଛଅଟି ଶାଖା ବିଷୟ ନାୟକାଚାର୍ଯ୍ୟ ପାଣିନୀୟଶିକ୍ଷା ଏବଂ ମାଣ୍ଡୂକ୍ୟୋପନିଷଦର ଟୀକାରେ ଲେଖାଅଛି ;—

ଛନ୍ଦଃ ପାଦୌ ତୁ ବେଦସ୍ୟ ହସ୍ତୌ କଳ୍ପୋଽଥ ପଠ୍ୟତେ ।
ଜ୍ୟୋତିଷାମୟନଂ ଚକ୍ଷୁଃ ନିରୁକ୍ତଂ ଶ୍ରୋତ୍ରମୁଚ୍ୟତେ । ୪୧
ଶିକ୍ଷା ଘ୍ରାଣଂ ତୁ ବେଦସ୍ୟ ମୁଖଂ ବ୍ୟାକରଣଂ ସ୍ମୃତମ୍ ।
ତସ୍ମାତ୍ ସାଙ୍ଗମଧୀତ୍ୟୈବ ବ୍ରହ୍ମଲୋକେ ମହୀୟତେ । ୪୨

ଅର୍ଥ ।—ଛନ୍ଦ ବେଦର ପାଦଦ୍ୱୟ, କଳ୍ପ ହସ୍ତଦ୍ୱୟ, ଜ୍ୟୋତିଷ ବେଦର ଚକ୍ଷୁ, ନିରୁକ୍ତ କର୍ଣ୍ଣ, ଶିକ୍ଷା ବେଦର ନାସିକା ଏବଂ ବ୍ୟାକରଣ ବେଦର ମୁଖ ବୋଲି ଉକ୍ତଅଛି । (ଉପରୋକ୍ତ ଅଙ୍ଗସହିତ ବେଦାଧ୍ୟୟନ କରିବା ବିଧେୟ ।) ଏଣୁକରି ଜ୍ୟୋତିଃଶାସ୍ତ୍ରକୁ "ବେଦାଙ୍ଗଶାସ୍ତ୍ର" ବୋଲିଯାଏ ।

ବେଦସ୍ୟ ନିର୍ମଳଂ ଚକ୍ଷୁର୍ଜ୍ୟୋତିଃଶାସ୍ତ୍ରମକଳ୍ମଷଂ ।
ବିନୈତଦଖିଳଂ ଶ୍ରୌତସ୍ମାର୍ତ୍ତଂ କର୍ମ ନ ସିଦ୍ଧ୍ୟତି ॥ (ନାରଦସଂହିତା)

ଅର୍ଥ ।—ପବିତ୍ର ଜ୍ୟୋତିଷଶାସ୍ତ୍ର ବେଦର ନିର୍ମଳ ଚକ୍ଷୁ ସ୍ୱରୂପ, ଏହା ବ୍ୟତୀତ ଶ୍ରୁତି, ସ୍ମୃତି ସମ୍ମତ ଯାବତୀୟ କାର୍ଯ୍ୟ ସିଦ୍ଧ ହୁଏନାହିଁ । ଏପରି ଜ୍ୟୋତିଷଶାସ୍ତ୍ର ଯେ ଗ୍ରହବିପ୍ର ଜାତି ଉପରେ ନିର୍ଭର କରିଅଛି, ସେମାନେ ଅବଶ୍ୟ ପୂଜନୀୟ ।

### ବେଦାଙ୍ଗ ମଧ୍ୟରେ ଜ୍ୟୋତିଃଶାସ୍ତ୍ର ଶ୍ରେଷ୍ଠ ।

ଯଥା ଶିଖା ମୟୂରାଣାଂ ନାଗାନାଂ ମଣୟୋ ଯଥା ।
ତଦ୍ୱଦ୍ ବେଦାଙ୍ଗଶାସ୍ତ୍ରାଣାଂ ଜ୍ୟୋତିଷଂ ମୂର୍ଦ୍ଧନିସ୍ଥିତଂ ॥ (ଗର୍ଗ)

ଅର୍ଥ ।—ଶିଖା ଯେପରି ମୟୂର ମସ୍ତକରେ ଥାଏ, ମଣି ଯେପରି ସର୍ପ ମସ୍ତକରେ ଶୋଭାପାଏ ; ସେହିପରି ଜ୍ୟୋତିଃଶାସ୍ତ୍ର ମଧ୍ୟ ବେଦାଙ୍ଗ ମସ୍ତକରେ ଅବସ୍ଥିତ ଅର୍ଥାତ୍ ବେଦାଙ୍ଗ ମଧ୍ୟରେ ଜ୍ୟୋତିଷଶାସ୍ତ୍ର ଶ୍ରେଷ୍ଠ ଅଟେ ।

### ଗ୍ରହବିପ୍ର ସମ୍ବନ୍ଧରେ ପ୍ରମାଣ ।

ଯେ ତୁ ସମ୍ୟକ୍ ବିଜାନନ୍ତି ହୋରାଗଣିତସଂହିତାଃ ।
ଅଭ୍ୟର୍ଚ୍ଚ୍ୟାଃ ତେ ନରେନ୍ଦ୍ରେଣ ସ୍ୱକୀର୍ତ୍ତିବ୍ୟୋ ଜୟୈଷିଣା ॥ (ଗର୍ଗ)

ଅର୍ଥ ।—ଗ୍ରହବିପ୍ରମାନେ ହୋରା, ଗଣିତ ଓ ସଂହିତା ; ଅର୍ଥାତ୍ ସମସ୍ତ ଜ୍ୟୋତିଃଶାସ୍ତ୍ର ତିନିସ୍କନ୍ଧରେ ବିଭକ୍ତ—ହୋରା, ଗଣିତ ଓ ସଂହିତା) ସହିତ ଜ୍ୟୋତିଃଶାସ୍ତ୍ର ଅବଗତ ଅଛନ୍ତି,

ନିଶ୍ଚୟ, ରଜାମାନେ ସେହି ଜ୍ୟୋତିର୍ବିଦର ଆଦେଶ ସ୍ୱୀକାର କରିବେ ।

ଦିବ୍ୟଂ ଚକ୍ଷୁ ର୍ଗ୍ରହାଣାନ୍ତୁ ଦର୍ଶିତଂ ଜ୍ଞାନମୁତ୍ତମଂ ।
ବିଜ୍ଞାୟାର୍କାଦି ଲୋକେଷୁ ସ୍ଥାନଂ ପ୍ରାପ୍ନୋତି ଶାଶ୍ୱତଂ । (ସୂର୍ଯ୍ୟସିଦ୍ଧା)

ଅର୍ଥ ।—ଗ୍ରହବିପ୍ରମାନେ ଦିବ୍ୟଚକ୍ଷୁ ସ୍ୱରୂପ—ସମସ୍ତ ଉତ୍ତମଜ୍ଞାନ ପ୍ରଦର୍ଶନ କରାଇ ଦିଅନ୍ତି, ଏଣୁ ଯେଉଁବ୍ୟକ୍ତି ସେମାନଙ୍କୁ ପୂଜା କରନ୍ତି, ଅନ୍ତିମ କାଳରେ ସେମାନେ ସୂର୍ଯ୍ୟାଦି ଲୋକରେ ସ୍ଥାନ ପାଇଥାନ୍ତି ।

ନକ୍ଷତ୍ରତିଥିପୁଣ୍ୟାହାନ୍ ମୁହୂର୍ତ୍ତାନ୍ ମଙ୍ଗଳାନି ଚ ।
ବିନିର୍ଦ୍ଦିଶନ୍ତି ଯେ ବିପ୍ରା ସ୍ତେ ପୂଜ୍ୟାଃ ସର୍ବକର୍ମସୁ ॥ (ପଦ୍ମ)

ଅର୍ଥ ।—ନକ୍ଷତ୍ର, ତିଥି, ପୁଣ୍ୟାହନ, ମୁହୂର୍ତ୍ତ ଓ ଶୁଭବିଷୟକ ଯେ ବିପ୍ର (ଗ୍ରହବିପ୍ର) ନିର୍ଦ୍ଦେଶ କରିଅଛନ୍ତି, ସେହି ବିପ୍ରମାନେ ସମସ୍ତ କର୍ମରେ ପୂଜ୍ୟ ହୁଅନ୍ତି ।

ଯେଽର୍ଚ୍ଚୟନ୍ତି ଦ୍ୱିଜାନ୍ ଲୋକେ ଶାକଦ୍ୱୀପୀ କୁଳୋଦ୍ଭବାନ୍ ।
ବୈକୁଣ୍ଠଂ ଯାନ୍ତିତେ ସର୍ବେ ଶ୍ରୀକୃଷ୍ଣସ୍ୟ ପ୍ରସାଦତଃ । (ଭଃପୁଃ ବ୍ରାଃ)

ଅର୍ଥ ।—ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କୁ ଯେଉଁମାନେ ଅର୍ଚ୍ଚନା କରନ୍ତି, ସେମାନେ ଶ୍ରୀକୃଷ୍ଣଙ୍କ ପ୍ରସାଦରେ ବୈକୁଣ୍ଠକୁ ଗମନ କରନ୍ତି ।

ଯତ୍ର ଦେବାଃ ଚ ପୂଜ୍ୟନ୍ତେ ସାମ୍ବତ୍ସରପୁରୋହିତୌ ।
ଗୁରବୋ ଗ୍ରହ ନକ୍ଷତ୍ରଂ ତଦ୍ରାଜ୍ୟଂ ବୃଦ୍ଧିଲକ୍ଷଣମ୍ । (ବୃହତ୍ସଂହିତା)

ଅର୍ଥ ।—ଦେବତା, ଜ୍ୟୋତିର୍ବିଦ, ପୁରୋହିତ, ଗୁରୁ, ଗ୍ରହ ଓ ନକ୍ଷତ୍ରର ପୂଜା ଦ୍ୱାରା ରାଜ୍ୟର ଉନ୍ନତି ହୁଏ ।

ଜ୍ୟୋତିଃଶାସ୍ତ୍ରାଧ୍ୟୟନ ଫଳ ।

ଜ୍ୟୋତିଶ୍ଚକ୍ରେତୁ ଲୋକସ୍ୟ ସର୍ବସ୍ୟୋକ୍ତଂ ଶୁଭାଶୁଭଂ ।

ଜ୍ୟୋତିର୍ଜ୍ଞାନାତ୍ତୁ ଯେ ବେଦ ନ ଯାନ୍ତି ପରମାଂ ଗତିଂ । (ବ୍ୟା)

ଅର୍ଥ ।—ଜ୍ୟୋତିଷ ଦ୍ୱାରା ସମସ୍ତ ଲୋକଙ୍କର ଶୁଭାଶୁଭ ଘଟନା ନିର୍ଣ୍ଣୀତ ହୋଇଥାଏ । ଗ୍ରହବିପ୍ରମାନେ ଏହି ଜ୍ୟୋତିଷ-ଶାସ୍ତ୍ର ଅବଗତ ଅଛନ୍ତି, ଏଣୁ ଯେମାନେ ପରମଗତି ପ୍ରାପ୍ତ ହୁଅନ୍ତି ନାହିଁ ସେମାନେ ସମ୍ବତ୍ସର ପାଠୀ ନରକେ ପତନ୍ତି ।

ବ୍ରହ୍ମଲୋକ ପ୍ରତିଷ୍ଠାଶ୍ଚ ଲଭନ୍ତେ ଦୈବଚିନ୍ତକାଃ । (ବୃହତ୍ସଂହିତା)

ଅର୍ଥ ।—ସମ୍ବତ୍ସର ପାଠୀ (ଅର୍ଥାତ୍ ଜ୍ୟୋତିଃଶାସ୍ତ୍ର ପାଠକ) ନରକକୁ ଗମନ କରନ୍ତି ନାହିଁ । ଦୈବଚିନ୍ତକ (ଗ୍ରହବିପ୍ର)ମାନେ ବ୍ରହ୍ମଲୋକରେ ପ୍ରତିଷ୍ଠାଲାଭ କରନ୍ତି ।

## ଜ୍ୟୋତିଃଶାସ୍ତ୍ର ବ୍ରାହ୍ମଣଙ୍କର ପାଠ୍ୟ ।

ବିନୈତଦଖିଲଂ ଶ୍ରୌତସ୍ମାର୍ତ୍ତ କର୍ମ ନ ସିଧ୍ୟତି ।
ତସ୍ମାଜ୍ଜଗଦ୍ଧିତାୟେଦଂ ବ୍ରହ୍ମଣା ନିର୍ମିତଂ ପୁରା ।
ଅତଏବ ଦ୍ୱିଜୈରେତଦଧ୍ୟେତବ୍ୟଂ ପ୍ରଯତ୍ନତଃ । (ନାରଦଃ)

ଅର୍ଥ ।—ଜ୍ୟୋତିଷଶାସ୍ତ୍ର ଦ୍ୱାରା କାଳ ନିରୂପଣ ନହେଲେ ଶ୍ରୌତକର୍ମ ଅର୍ଥାତ୍ ବେଦବିହିତ କର୍ମ ଏବଂ ସ୍ମୃତି-ବିହିତକର୍ମ ସମ୍ପନ୍ନ ହୋଇ ପାରେନାହିଁ । ଏଣୁ ବ୍ରହ୍ମା ଜଗତର ହିତ ସକାଶେ ଏହି ଶାସ୍ତ୍ର ନିର୍ମାଣ କରିଅଛନ୍ତି । ଅତଏବ ଏହା ବ୍ରାହ୍ମଣଙ୍କର ପାଠ୍ୟ ।

## ଶୂଦ୍ରକୁ ଜ୍ୟୋତିଃଶାସ୍ତ୍ର ଶିକ୍ଷାଦେବା ମହାପାପ ।

ଲୋଭାତ୍ ସ୍ନେହାତ୍ ମୋହାତ୍ ଯୋ ଦ୍ୱିଜୋ ଜ୍ଞାନଗୋପିତାଂ ।
ଶୂଦ୍ରାଣାମୁପଦେଶନ୍ତୁ ଦଦ୍ୟାତ୍ ସ ନରକଂ ବ୍ରଜେତ୍ । (ଗର୍ଗ)

ଅର୍ଥ ।—ଯେଉଁ ଗ୍ରହବିପ୍ର ଲୋଭ, ମୋହ ବା ଅଜ୍ଞାନବଶତଃ ଶୂଦ୍ରକୁ ଜ୍ୟୋତିଷଶାସ୍ତ୍ର ଉପଦେଶ ପ୍ରଦାନ କରେ, ସେ ନିଶ୍ଚୟ ନରକଗାମୀ ହୁଏ ।

## ଜ୍ୟୋତିର୍ବିଦଙ୍କର ଭରଣ-ପୋଷଣ ରଜାଙ୍କର କର୍ତ୍ତବ୍ୟ ।

ବୈଦ୍ୟଃ ପୁରୋହିତୋ ମନ୍ତ୍ରୀ ଦୈବଜ୍ଞଶ୍ଚ ଚତୁର୍ଥକଃ ।
ଏତେ ରକ୍ଷ୍ୟା ସଦାପୋଷ୍ୟାଃ କୃଚ୍ଛ୍ରେଣାପି ନୃପୈର୍ଯଥା ॥

ଅର୍ଥ ।—କୃଚ୍ଛ୍ରାବସ୍ଥାରେ ସୁଦ୍ଧା ବୈଦ୍ୟ, ପୁରୋହିତ, ମନ୍ତ୍ରୀ ଓ ଦୈବଜ୍ଞ ଏହି ଚାରିଜଣଙ୍କୁ ରଜାମାନଙ୍କର ପ୍ରତିପାଳନ କରିବା ଅବଶ୍ୟ କର୍ତ୍ତବ୍ୟ ।

ରାଜା ଚ ସର୍ବେଷୁ କାର୍ଯ୍ୟେଷୁ ସାମ୍ବତ୍ସରାଧୀନଃ ସ୍ୟାତ୍ । ଶୁକ୍ରନୀତି

ଅର୍ଥ ।—ରଜାମାନେ ସମସ୍ତ କାର୍ଯ୍ୟରେ ଜ୍ୟୋତିଷଙ୍କର ଅଧୀନରେ ଥିବେ ।

## ଗ୍ରହବିପ୍ରଙ୍କୁ ଦର୍ଶନକଲେ ପୁଣ୍ୟଲାଭ ।

ବୈଦ୍ୟଃ ପୁରୋହିତୋ ମନ୍ତ୍ରୀ ଦୈବଜ୍ଞଶ୍ଚ ଚତୁର୍ଥକଃ ।
ପ୍ରାତଃକାଳେ ଚ ଦ୍ରଷ୍ଟବ୍ୟା ନିତ୍ୟଂ କଲ୍ୟାଣମିଚ୍ଛତା ॥ ରାଜମାର୍ତ୍ତଣ୍ଡ

ଅର୍ଥ ।—ଯେଉଁ ବ୍ୟକ୍ତି ପ୍ରାତଃକାଳରେ ବୈଦ୍ୟ, ପୁରୋହିତ, ମନ୍ତ୍ରୀ ଓ ଦୈବଜ୍ଞଙ୍କୁ ଦର୍ଶନ କରନ୍ତି, ପ୍ରତିଦିନ ତାଙ୍କର କଲ୍ୟାଣ ହୋଇଥାଏ । (ରାଜମାର୍ତ୍ତଣ୍ଡ ଗ୍ରନ୍ଥର ୧ମ ଅଧ୍ୟାୟରେ ଅନେକ ଗ୍ରହଣୀୟ ପ୍ରମାଣ ରହିଅଛି ।)

ଏବମ୍ବିଧସ୍ୟ ସ୍ପୃଷ୍ଟ ଜ୍ୟୋତିଃ ଶାସ୍ତ୍ର ସ୍ୱରୂପ ବର୍ତ୍ତୁଃ ଖଲୁ ଦର୍ଶନଂ ବୈ ନନ୍ଦନ୍ତ୍ୟଶେଷଂ କଲୁଷଂ ଜନାନାଂ ସଦ୍ବନ୍ଦନଂ ଧର୍ମ ସୁଖାସ୍ପଦଂ ସ୍ୟାତ୍ । (ବୃହତ୍ସଂହିତା)

ପ୍ରାତରୁତ୍ଥାୟ ଯଃ ପଶ୍ୟେତ୍ ଗ୍ରହବିପ୍ରଂ ମହେଶ୍ୱର ।
ନ ଲିପ୍ତୋ ଦୁଷ୍କୃତୈଃ ସର୍ବୈଃ ବଦନେ ସୁକ୍ଷୟଂ ଫଳଂ । ବ୍ରହ୍ମଯାମଳ

ଅର୍ଥ ।—ହେ ମହେଶ୍ୱର ! ଯେ କୌଣସି ବ୍ୟକ୍ତି ପ୍ରାତଃ କାଳରେ ଗାତ୍ରୋତ୍ଥାନ କରି ଗ୍ରହବିପ୍ରଙ୍କୁ ଦର୍ଶନ କରେ, ତାହାକୁ ଦୁଷ୍ଟ, ଅରିଷ୍ଟ ପ୍ରଭୃତି ସ୍ପର୍ଶ କରି ପାରେନାହିଁ ଏବ

ଯେଉଁବ୍ୟକ୍ତି ଭକ୍ତିସହକାରେ ଗ୍ରହବିପ୍ରଙ୍କୁ ପ୍ରଣାମ କରେ, ତାହାର ଅକ୍ଷୟଫଳ ଲାଭହୁଏ ।

ଗ୍ରହବିପ୍ରଙ୍କୁ ଭୂମ୍ୟାଦି ଦାନ ଦେବାର ଫଳ ।

ଗ୍ରାମଂ ଯଚ୍ଛତି ଯୋ ଭକ୍ତ୍ୟା ଗ୍ରହବିପ୍ରାୟ ଭୂପତେ ।
ଯାବନ୍ତୋ ରେଣବଃ ପୃଥ୍ୱ୍ୟାଃ ଯାବନ୍ତୋ ବୃଷ୍ଟିବିନ୍ଦବଃ । ବ୍ରହ୍ମ

ଅର୍ଥ ।—ଯେଉଁବ୍ୟକ୍ତି ଭକ୍ତିସହକାରେ ଗ୍ରହବିପ୍ରଙ୍କୁ ଗ୍ରାମ-ଦାନ କରନ୍ତି, ପୃଥିବୀର ରେଣୁ ବା ବୃଷ୍ଟିଧାର ସ୍ୱରୂପ ଅସଂଖ୍ୟ ପୁଣ୍ୟ ହୋଇଥାଏ ।

ଗୋଦାନଂ ଭୂମିଦାନଞ୍ଚ ସ୍ୱର୍ଣ୍ଣଦାନଂ ବିଶେଷତଃ ।
ଗ୍ରହଣେ କ୍ଲେଶନାଶାୟ ଦୈବଜ୍ଞାୟ ନିବେଦୟେତ୍ । (ସ୍କନ୍ଦପୁରାଣ)

ଅର୍ଥ ।—ଗ୍ରହଣ ଦୋଷ ଶାନ୍ତି ନିମନ୍ତେ ଦୈବଜ୍ଞମାନଙ୍କୁ ଗୋଦାନ, ଭୂମିଦାନ ସ୍ୱର୍ଣ୍ଣଦାନାଦି ପ୍ରଦାନ କରିବ ।

ଗ୍ରହବିପ୍ର-ବିହୀନ-ଦେଶରେ ବାସକରିବା ନିଷେଧ ।

ଅପ୍ରଦୀପା ଯଥା ରାତ୍ରିରନାଦିତ୍ୟଂ ଯଥା ନଭଃ ।
ତଥାଽସାମ୍ୱତ୍ସରୋ ରାଜା ଭ୍ରମତ୍ୟନ୍ଧ ଇବା ଧ୍ୱନି । (ଗର୍ଗ)

ଅର୍ଥ ।—ପ୍ରଦୀପହୀନ ରାତି ଓ ସୂର୍ଯ୍ୟହୀନ ଆକାଶ ଯେପରି ଅନ୍ଧକାରମୟ, ସେହିପରି ରାଜ୍ୟାଧିପତି ଗ୍ରହବିପ୍ରବିହୀନ ହେଲେ ଅନ୍ଧପ୍ରାୟ ଭ୍ରମିବାକୁ ହୁଏ ।

ନ ସାମ୍ୱତ୍ସରକେ ଦେଶେ ବସ୍ତବ୍ୟଂ ଭୂତିମିଚ୍ଛତା ।
ଚକ୍ଷୁର୍ଭୂତୋ ହି ଯତ୍ରୈଷ ପାପଂ ତତ୍ର ନ ବିଦ୍ୟତେ । (ବ୍ରହ୍ମ)

ଅର୍ଥ ।—ଯେଉଁ ଦେଶରେ ସାମ୍ୱତ୍ସର (ଗ୍ରହବିପ୍ର) ନାହାନ୍ତି, ମଙ୍ଗଳେଚ୍ଛୁକ ଲୋକମାନଙ୍କର ସେ ଦେଶରେ ବାସ କରିବା କର୍ତ୍ତବ୍ୟ ନୁହେଁ । (ଚକ୍ଷୁସ୍ୱରୂପ) ଗ୍ରହବିପ୍ରମାନେ ଯେଉଁସ୍ଥାନରେ ଅବସ୍ଥାନ କରନ୍ତି, ସେସ୍ଥାନରେ କୌଣସି ପାପ ଥାଏନାହିଁ ।

ତତ୍ତ୍ୱବସ୍ତ୍ରାଙ୍ଘ୍ରିରେଣୁସ୍ତୁ ଗ୍ରାମେ ବା ଯସ୍ୟ ସଦ୍ମନି ।
ନୃପତେ ସ୍ପୃଶ୍ୟ ଦେହସ୍ଥଂ ସର୍ବପାପଂ ବିନଶ୍ୟତି ॥

ଅର୍ଥ ।—ଯେଉଁ ରାଜାଙ୍କ ଗ୍ରାମରେ ବା ଗୃହରେ ତତ୍ତ୍ୱବସ୍ତ୍ର-ଙ୍କର ପଦଧୂଳି ପଡ଼େ, ତାଙ୍କ ଦେହରୁ ସବୁପ୍ରକାର ପାପରାଶି ବିନଷ୍ଟ ହୁଏ ।

ବୈଷ୍ଣବଙ୍କୁ ଅନାଦର କରିବା ମହାପାପ ।

ଗତଶ୍ରୀର୍ଗଣକାନ୍ ଦ୍ୱେଷ୍ଟି ଗତାୟୁଷ୍ଟ ତତ୍ତ୍ୱଜ୍ଞକାନ୍ ।
ଗତଶ୍ରୀଷ୍ଟ ଗତାୟୁଷ୍ଟ ବ୍ରାହ୍ମଣାନ୍ ଦ୍ୱେଷ୍ଟି ଭାରତ ॥ (ମହାଭାରତ)

ଅର୍ଥ ।—ଗଣକ ବ୍ରାହ୍ମଣଙ୍କୁ ନିନ୍ଦାକଲେ ଶ୍ରୀନାଶ ହୁଏ, ତତ୍ତ୍ୱଜ୍ଞଙ୍କ ନିନ୍ଦାକଲେ ଆୟୁନାଶ ହୁଏ, ଅନ୍ୟାନ୍ୟ ବ୍ରାହ୍ମଣଙ୍କୁ ନିନ୍ଦାକଲେ ଆୟୁ ଓ ଧନନାଶ ହୁଅଇ ।

ଯୋ ତତ୍ତ୍ୱବ୍ରାହ୍ମଣାଂ ଦୃଷ୍ଟ୍ୱା ବ୍ରୂତେ କୁବଚନଂ ଯଦ ।
ରୋଗଶୋକାନ୍ୱିତଃ ସୋଽପି ଲଭତେ ନାରକୀଂ ବ୍ୟଥାମ୍ ॥
(ବ୍ରହ୍ମବୈବର୍ତ୍ତ ।)

ଅର୍ଥ ।—ଯେଉଁବ୍ୟକ୍ତି ତତ୍ତ୍ୱବସ୍ତ୍ରଙ୍କୁ ଦେଖି କୁବଚନ କୁହେ, ସେ ରୋଗ-ଶୋକ ପ୍ରାପ୍ତ ହୋଇ ଯନ୍ତ୍ରଣା ଭୋଗକରେ ।

ସମ୍ମାନ୍ୟଃ ପୂଜନୀୟଶ୍ଚ ବସ୍ତ୍ରାଗାନାଂ ଯଥାହ୍ୟହମ୍ ।
ଯଃ କରୋତ୍ୟବମାନଞ୍ଚ ବୃତ୍ତିରୁପଲୁ ଭୋଜକେ ॥
ତସ୍ୟାହଂ ରୋଷମେତ୍ୟାଶୁ କୁଳଂ ହନ୍ମି ସମନ୍ତତଃ ।
ପ୍ରିୟୋ ମେ ଭୋଜକୋ ନିତ୍ୟଂ ଯଥା ତ୍ୱଂ ବିନତାସୁତ ॥
(ଭବିଷ୍ୟପୁରାଣ ବ୍ରାହ୍ମପର୍ବ ୧୧୭ ଅଃ)

ଅର୍ଥ ।—(ସୂର୍ଯ୍ୟଦେବ କହୁଅଛନ୍ତି) ମୁଁ ଯେପରି, ଭୋଜକ ବ୍ରାହ୍ମଣମାନେ ସେହିପରି; ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କଠାରୁ ସମ୍ମାନନୀୟ ଓ ପୂଜନୀୟ । ଭୋଜକମାନଙ୍କ ବୃତ୍ତିକୁ ଯେଉଁବ୍ୟକ୍ତି

ଅପମାନନା କରେ, ମୁଁ ତୁଷ୍ଟହୋଇ ତାହାର ବଂଶ ଧ୍ୱଂସକରେଁ । ହେ ବୈନତେୟ: ତୁମ୍ଭେ ଯେପରି ମୋର ପ୍ରିୟ, ଜ୍ୟୋତକ ବ୍ରାହ୍ମଣମାନେ ସେହିପରି ମୋର ଅତ୍ୟପ୍ରିୟ ଅଟନ୍ତି ।

ହସ୍ତାଙ୍ଗୋପାଙ୍ଗ କୁଶଳଂ ହୋରାଗଣିତ ନୈଷ୍ଠିକଂ ।
ଯୋ ନ ପୂଜୟତେ ରାଜନ୍ ସନାଶ ମୁପଗଚ୍ଛତି ।

ଅର୍ଥ ।—ହେ ରାଜନ୍ ! ହୋରା-ଗଣିତ ନୈଷ୍ଠିକ, ଅଙ୍ଗ ଓ ଉପାଙ୍ଗକୁଶଳ ଜ୍ୟୋତିର୍ବିଦଙ୍କୁ ଯେଉଁ ରାଜା ପୂଜା ନ କରନ୍ତି (ବା ଅନାଦର କରନ୍ତି), ସେହି ରାଜା ବିନାଶ ପ୍ରାପ୍ତ ହୁଅନ୍ତି ।

## ଗ୍ରହବିପ୍ରଙ୍କ ଶରୀରରେ ଗ୍ରହଙ୍କର ସ୍ଥାନନିର୍ଣ୍ଣୟ ।

ଗ୍ରହାଧୀନଂ ଜଗତ୍ ବ୍ରାହ୍ମନ୍ ମନ୍ତ୍ରାଧୀନା ଅପିଗ୍ରହାଃ ।
ତନ୍ତ୍ରା ଗଣକାଧୀନା ଗଣକାସ୍ତେନ ତେ ଗ୍ରହାଃ । ବ୍ରହ୍ମସିଦ୍ଧାନ୍ତ

ଅର୍ଥ ।—ହେ ବ୍ରହ୍ମନ୍ ! ଏହି ଚରାଚର ବିଶ୍ୱ ଗ୍ରହମାନଙ୍କର ଅଧୀନ, (ଅର୍ଥାତ୍ ଗ୍ରହମାନଙ୍କ ଦ୍ୱାରା ନିଖିଳ ଜଗତ୍ ପରିଚାଳିତ ହେଉଅଛି ।) ସେହି ଗ୍ରହମାନେ ମନ୍ତ୍ରର ଅଧୀନ ଏବଂ ସେମାନଙ୍କ ମନ୍ତ୍ରସବୁ ଗଣକ ବା ଗ୍ରହବିପ୍ରମାନଙ୍କ ଅଧୀନ ; ଅତଏବ ଗ୍ରହବିପ୍ର ଗ୍ରହସ୍ୱରୂପ ଅଟନ୍ତି ।

ଶୀର୍ଷେ ସୂର୍ଯ୍ୟୋ ବିଧୁର୍ନେତ୍ରେ ମୁଖେ ଭୌମୋ ହୃଦି ବୁଧଃ ।
ନାଭିଦେଶେ ଗୁରୁଶ୍ଚୈବ ପୃଷ୍ଠଦେଶେ ଚ ଭାର୍ଗବଃ ।
ଶନୈଶ୍ଚରାସ୍ଥିତଶ୍ଚୈବ ରାହୁକେତୁ ପଦଦ୍ୱୟେ ।
ଗ୍ରହବିପ୍ର ଶରୀରେଷୁ ଗ୍ରହାଃ ସ୍ୱଃ ସୁବ୍ୟବସ୍ଥିତାଃ ।
[ଇତି ମନ୍ତ୍ରେଣ ବ୍ରହ୍ମସୂତ୍ର ଶିରପାଦ ସ୍ପୃଶନ୍ ଜପେତ୍] ଗ୍ରହଯାମଳ

ଅର୍ଥ ।—ଗ୍ରହବିପ୍ରଙ୍କ ମସ୍ତକରେ ସୂର୍ଯ୍ୟ, ଚକ୍ଷୁରେ ଚନ୍ଦ୍ର, ମୁଖରେ ମଙ୍ଗଳ, ହୃଦୟରେ ବୁଧ, ନାଭିଦେଶରେ ବୃହସ୍ପତି,

ଶୁକ୍ର-ପୃଷ୍ଠଦେଶରେ, ଶନି ଜଙ୍ଘରେ ଏବଂ ପଦଦ୍ୱୟରେ ରାହୁ-କେତୁ ଅବସ୍ଥିତ ଥାଆନ୍ତି ।

### ଗ୍ରହବିପ୍ରଙ୍କୁ ପ୍ରଣାମ କରିବାର ଫଳ ।

ଯେଷାଂ ହରଗ୍ନି ଭୂଦେବେ ପ୍ରଣାମେ ଯତ୍ ଫଳଂ ଲଭେତ୍ ।
ଜାହ୍ନୀଷ ବିପ୍ରଦେବେଷୁ ତତ୍ଫଲଞ୍ଚାଷ୍ଟମଂ ଗୁଣଂ ।
ତସ୍ୟ ଲକ୍ଷଗୁଣଂ ଦେବ ଫଳଂ ସ୍ୟାଦ୍ ଗ୍ରହବିପ୍ରରେ ।
ଯାଜ୍ଞିକ ବ୍ରାହ୍ମଣେ ତସ୍ୟ ପ୍ରଣାମେ କୋଟିଧଂ ଭବେତ୍ । ଗ୍ରହଯାମଳ

ଅର୍ଥ ।—ହରଗ୍ନି ବ୍ରାହ୍ମଣଙ୍କୁ ପ୍ରଣାମ କଲେ ଯେଉଁଫଳ ଲବ୍ଧହୁଏ, ଜାହ୍ନୀଷ ବ୍ରାହ୍ମଣଙ୍କୁ ପ୍ରଣାମକଲେ ତାହାର ଅଠଗୁଣ ଫଳ, ଗ୍ରହବ୍ରାହ୍ମଣଙ୍କୁ ପ୍ରଣାମ କଲେ ତାହାର ଲକ୍ଷଗୁଣ ଫଳ ଏବଂ ଯାଜ୍ଞିକ ବ୍ରାହ୍ମଣଙ୍କୁ ପ୍ରଣାମକଲେ ତହିଁର କୋଟିଗୁଣ ଫଳ ଲବ୍ଧ ହୁଅଇ ।

ଗ୍ରହବିପ୍ରମାନେ କ୍ଷତ୍ରିୟାଦି ବର୍ଣ୍ଣଚୟଙ୍କୁ ପ୍ରଣାମକଲେ ପ୍ରାୟଶ୍ଚିତ୍ତର୍ଦ୍ଦ ।

ଋତ୍ୱିଜୋ ଦୂରତୋ ଦୃଷ୍ଟ୍ୱା ବ୍ରାହ୍ମଣଂ ଭୂପ ସଙ୍ଗତଃ ।
ପ୍ରଣମେଦ୍ୱିଧିବଦ୍ଭକ୍ତ୍ୟା କ୍ଷତ୍ରିୟାଦ୍ୟର୍ନ ସଂଶୟଃ ।
ବିପ୍ରଂ ଦୃଷ୍ଟ୍ୱା ଦ୍ୱିଜାଗ୍ରସ୍ତୁ ନତଂ ପ୍ରଣତମେବ ବା ।
କୁର୍ଯ୍ୟାଦ୍ ଚନ୍ଦ୍ରତଃ ଯୋଽପି ନରକସ୍ୟ ବସ୍ତୁଦହେତ ।
ଅବସର୍ପୀ କ୍ଷତ୍ରିୟାଦଃ ପ୍ରଣମେଦ୍ ଦ୍ୱିଜଭୂଷଣମ୍ ।
ତତ୍ପଦେଷୁ ହୁ ବିପ୍ରସ୍ୟ ନାନ୍ୟସ୍ୟ ଚ କଥଞ୍ଚନେତ । (ସ୍ମୃତିବଚନ

"ଗଣକବ୍ରାହ୍ମଣସ୍ୟାପି କ୍ଷତ୍ରିୟାଭିବାଦନେ ପ୍ରାୟଶ୍ଚିତ୍ତମାହ ।
ବ୍ରାହ୍ମଣ ଇତ୍ୟନୁବୃତ୍ତୌ ମିତାକ୍ଷରାୟାଂ ।    ହାରୀତଃ ।
କ୍ଷତ୍ରିୟସ୍ୟାଭିବାଦନେ ଅହୋରାତ୍ର ମୁପବସେତ୍ତଥା ।
ବୈଶ୍ୟସ୍ୟାପି ଶୂଦ୍ରସ୍ୟାଭିବାଦନେ ତ୍ରିରାତ୍ର ମୁପବସେଦତ ।

ଅର୍ଥ ।—ଗଣକ ବ୍ରାହ୍ମଣ କ୍ଷତ୍ରିୟାଦି ଜାତିଙ୍କୁ ଅଭିବାଦନ

କଲେ ପ୍ରାୟଶ୍ଚିତ୍ତାର୍ହ । ତାହେତ ସ୍ମୃତି କହୁଅଛନ୍ତି,—କ୍ଷତ୍ରିୟଙ୍କୁ ଅଭିବାଦନକଲେ ଏକଦିନ ଏବଂ ବୈଶ୍ୟ ଓ ଶୂଦ୍ରଙ୍କୁ ଅଭିବାଦନ କଲେ ତିନିଦିନ ଉପବାସ ରହି ଶୁଦ୍ଧ ହେବ ।

ଏହି ସମସ୍ତ ମାହାତ୍ମ୍ୟ ପ୍ରମାଣମାନଙ୍କରୁ ବୁଝାଗଲା ଯେ, ଗ୍ରହବିପ୍ରମାନେ ଉତ୍କୃଷ୍ଟ ବ୍ରାହ୍ମଣ ଅଟନ୍ତି । ତାହା ବ୍ୟାସଃ ମଧ କହୁଅଛନ୍ତି,—"ଅଗ୍ନିହୋତ୍ରୀ ତଥା ବେଦୀ ଦୈବଜ୍ଞଃ ଶ୍ରୋତ୍ରିୟୋ ଦ୍ୱିଜା ।" ଅର୍ଥାତ୍ ଅଗ୍ନିହୋତ୍ରୀ, ବୈଦିକ, ଦୈବଜ୍ଞ ଓ ଶ୍ରୋତ୍ରିୟଃ ଏମାନେ ଉତ୍କୃଷ୍ଟ ବ୍ରାହ୍ମଣ ଅଟନ୍ତି ।

# ନବମ ଅଧ୍ୟାୟ ।

## ଶ୍ରାଦ୍ଧାଦି ପ୍ରତ୍ୟେକ କାର୍ଯ୍ୟରେ ଗ୍ରହବିପ୍ରଙ୍କୁ ବରଣ କରିବା ଶାସ୍ତ୍ରୋଚିତ ।

ମେଧାତିଥେ ଯଦାସୂର୍ଯ୍ୟଂ ଶ୍ରାଦ୍ଧାଦୌ ଯଜ୍ଞକର୍ମଣି ।
ଶାକଦ୍ୱୀପୀଦ୍ୱିଜୋ ତତ୍ର ସ୍ଥାପନୀୟଃ ପ୍ରଯତ୍ନତଃ ।
ଶାକଦ୍ୱୀପୀ ଦ୍ୱିଜୋ ଯତ୍ର ତତ୍ର ସୂର୍ଯ୍ୟୋ ନ ସଂଶୟ ।
ସୂର୍ଯ୍ୟୋଽଗ୍ନିର୍ବ୍ରାହ୍ମଣୋ ଯତ୍ର ତତ୍ର ଯଜ୍ଞାଦିକ କ୍ରିୟା ।
ଲୁପ୍ତେ ସୂର୍ଯ୍ୟେ ବହିସ୍ଥାନେ ଶାକଦ୍ୱୀପୀ ଦ୍ୱିଜ ସ୍ଥିତେ ।
ତତ୍ର ଯଜ୍ଞାଦିକଂ କର୍ମ କରଣୀୟଂ ନ ଦୋଷଭାକ୍ । ସାମ୍ବପୁରାଣ

ଅର୍ଥ ।—ଶ୍ରାଦ୍ଧାଦି ଯଜ୍ଞକାର୍ଯ୍ୟରେ ସୂର୍ଯ୍ୟଦେବ ଯଦ୍ୟପି ମେଧାବୃତ ହୁଅନ୍ତି, ତାହାହେଲେ ଯେଉଁସ୍ଥଳେ ଶାକଦ୍ୱୀପୀ ବ୍ରାହ୍ମଣ (ଗ୍ରହବିପ୍ର)ଙ୍କୁ ଅତି ଯତ୍ନର ସହିତ ସ୍ଥାପନ କରିବ ; କାରଣ ଶାକଦ୍ୱୀପୀ ଦ୍ୱିଜ ଯେଉଁସ୍ଥାନରେ ଥାଅନ୍ତି, ସୂର୍ଯ୍ୟଦେବ

ସେହିସ୍ଥାନରେ ରହିଥାନ୍ତି । ସୂର୍ଯ୍ୟ, ଅଗ୍ନି ଓ ବ୍ରାହ୍ମଣ ଯେଉଁସ୍ଥାନରେ ଥିବେ ସେ ସ୍ଥାନରେ ଯଜ୍ଞାଦିକ୍ରିୟା କରିବା କର୍ତ୍ତବ୍ୟ । ସୂର୍ଯ୍ୟଦେବ ଲୁପ୍ତ (ମେଘାବୃତ) ବା ଅସ୍ତହେଲେ ଓ ଅଗ୍ନି ହୀନ ହେଲେ ଯଜ୍ଞାଦି କାର୍ଯ୍ୟରେ ଯେଉଁଦୋଷ ହୁଏ, ଶାକଦ୍ୱୀପୀ ବ୍ରାହ୍ମଣଙ୍କର ଉପସ୍ଥିତିରେ ସେ ଦୋଷ ସ୍ପର୍ଶ କରି ପାରେନାହିଁ ।

ପ୍ରପୂଜ୍ୟ ଗ୍ରହଭୂପେଶମଂଶୁମନ୍ତଂ ତ୍ରିଲୋଚନ ।
ଧୀରସ୍ତୁ(୧) ପୂଜୟିତ୍ୱାତୁ ତତଃ ଶ୍ରାଦ୍ଧଂ ପ୍ରକଳ୍ପୟେତ୍ ।
ପଞ୍ଚଭିର୍ବ୍ରାହ୍ମଣୈର୍ଦେବ ଭବ୍ୟୈର୍ଭୌମୈଶ୍ଚ ସୁବ୍ରତ ।
ମଗସଂଜ୍ଞୋ ତତ୍ର ଭବ୍ୟୌ ବ୍ରାହ୍ମଣୌ ପରିକଳ୍ପୟେତ୍ ।
ତ୍ରୀନେବ ବ୍ରାହ୍ମଣାନ୍ ଭୌମାନ୍ ପ୍ରକଳ୍ପ୍ୟାରିନିସୂଦନ ।
କୁର୍ଯ୍ୟାଦ୍ଦେବ ତତଃ ଶ୍ରାଦ୍ଧଂ ପାର୍ବଣଂ ଭାସ୍କରପ୍ରିୟଂ ।
ଶ୍ରାଦ୍ଧେଷ୍ୱେଥ ସମାପ୍ତେ ତୁ ଦଦ୍ୟାତ୍ ପିଣ୍ଡନ୍ତୁ ମଧ୍ୟମଂ ।
ପୁରତୋଦେବଦେବସ୍ୟ ସ୍ଥିତା ମନ୍ତ୍ରେଣ ସୁବ୍ରତ ।
(ଭବିଷ୍ୟପୁରାଣ ବ୍ରାହ୍ମପର୍ବ, [illegible])

ଅର୍ଥ ।—ହେ ତ୍ରିଲୋଚନ! ଗ୍ରହଶ୍ରେଷ୍ଠ ଅଂଶୁମାନ ସୂର୍ଯ୍ୟ ଦେବଙ୍କୁ ଓ ଧୂପ-ପୂଜା କରିତଃ ଶ୍ରାଦ୍ଧାନୁଷ୍ଠାନ କରିବ । ହେ ସୁବ୍ରତ, ଭବ୍ୟ ଓ ଭୌମ ବ୍ରାହ୍ମଣ ପାଞ୍ଚଜଣ ଗ୍ରହଣ କରିବ । ତନ୍ମଧ୍ୟରେ ଦୁଇଟି ମଗସଂଜ୍ଞକ ଭବ୍ୟବ୍ରାହ୍ମଣ (ଗ୍ରହବିପ୍ର) ଓ ଭୌମ (ଅନ୍ୟଶ୍ରେଣୀୟ) ବ୍ରାହ୍ମଣ ତିନୋଟି ସ୍ଥାପନ କରିବ ; (ହେ ଅରିନିସୂଦନ,) ସୂର୍ଯ୍ୟପ୍ରିୟ ପାର୍ବଣଶ୍ରାଦ୍ଧ କରିବ । ପରେ ଶ୍ରାଦ୍ଧ ସମାପ୍ତ ହେଲେ ସୂର୍ଯ୍ୟଦେବଙ୍କ ସାକ୍ଷାତରେ ମନ୍ତ୍ରପାଠ କରି ମଧ୍ୟମ ପିଣ୍ଡ ପ୍ରଦାନ କରିବ ।

---

(୧) "ଧୂପଂ" ଇତି ପାଠାନ୍ତର ।

ଭବିଷ୍ୟପୁରାଣରେ ସାମ୍ବଙ୍କ ପ୍ରତି ନାରଦଙ୍କର ଉକ୍ତି, ଯଥା :—

ଶାକଦ୍ୱୀପାଦିହାନୀତା ଯେ ମଗା ବେଦ-ପାରଗାଃ ।
ତେଷାଂ ସନ୍ଦର୍ଶନାତ୍ ଦାନାତ୍ ପୂଜନାତ୍ ସର୍ବକର୍ମସୁ ।
ପାପରାଶି କ୍ଷୟଂୟାତି ଧାମ-ପ୍ରାପ୍ତିଶ୍ଚ ଜାୟତେ ।

ଅର୍ଥ ।—ଶାକଦ୍ୱୀପରୁ ଯେଉଁ ବେଦପାରଗ ମଗ ଅର୍ଥାତ୍ ଗ୍ରହବିପ୍ରମାନେ ଅଣାଅଛନ୍ତି, ସେମାନଙ୍କୁ ସର୍ବକର୍ମରେ ଦର୍ଶନ, ଦାନ ଓ ପୂଜାକଲେ ପାପରାଶି ଦୂରୀଭୂତ ହୁଏ ଏବଂ ଅଭୀଷ୍ଟ ପୂର୍ଣ୍ଣ ହୁଏ ।

ଯାଗେ ବିବାହମୌଞ୍ଜୀ ବ୍ରତଦାନହୋମେ
ଶାସ୍ତ୍ରାବପୁଂସବନଜନ୍ମାନ୍ତ୍ୟାର୍ଘ୍ୟକାଳେ ।
ଯଃ ପୂଜୟେଦ୍ ଗ୍ରହଗଣଂ ଚଣ୍ଡୀବର୍ଣ୍ଣଂ
ଲବ୍ଧ୍ୱାପି ସମଫଳଂ ଲଭତେ ଧ୍ରୁବଂ ସଃ । (ମାର୍କଣ୍ଡେୟ ୧।-)

ଅର୍ଥ ।—ଯାଗାଦି କାର୍ଯ୍ୟ, ବିବାହ, ଶତବର୍ଷ କଷ୍ଟ, ବ୍ରତଦାନ କାର୍ଯ୍ୟ, ଉପନୟନ, ହୋମକର୍ମ, ଶାସ୍ତ୍ରୋକ୍ତ ପୁଂସବନ, ଗର୍ଭାଧାନଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଏବଂ ପୁରଶ୍ଚରଣାଦି ପ୍ରଭୃତି କାର୍ଯ୍ୟରେ ଓ ଅର୍ଘ୍ୟଦାନ କାଳରେ ଗଣକ ଅର୍ଥାତ୍ ଗ୍ରହବିପ୍ରଙ୍କୁ ଯେଉଁବ୍ୟକ୍ତି ପୂଜା କରନ୍ତି, ସେବ୍ୟକ୍ତି ସେହି କର୍ମରେ ଫଳଲାଭ କରନ୍ତି ।

ଯଜ୍ଞେ ଦାନେ ବିବାହେଚ ବ୍ରତେ ପୁଂସବନେ ତଥା ।
ଗ୍ରହପୂଜାଚ ହୋମାଚ କର୍ତ୍ତବ୍ୟାଚ ଗ୍ରହଦ୍ୱିଜୈଃ ।
ଶାନ୍ତେ ହୋମେଚ ମାଙ୍ଗଲ୍ୟେ ସର୍ବତ୍ର ବରଣୀ ଭୁତାଃ ।
( ବୃହତ୍ ମନୁସଂହିତା ୧୨ଶ ପରିଚ୍ଛେଦ । )

ଅର୍ଥ ।—ଯଜ୍ଞ, ଦାନ, ବିବାହ, ବ୍ରତ, ପୁଂସବନ, ଗ୍ରହପୂଜା ଓ ହୋମଯଜ୍ଞାଦି କାର୍ଯ୍ୟରେ ଗ୍ରହକ କାର୍ଯ୍ୟସମୂହ ଗ୍ରହବିପ୍ରଙ୍କ ଦ୍ୱାରା

ସମ୍ପନ୍ନ କରଇବ । ଶ୍ରାଦ୍ଧ, ହୋମ ଓ ଅନ୍ୟାନ୍ୟ ଦୈବକାର୍ଯ୍ୟରେ ଗ୍ରହବିପ୍ରଙ୍କୁ ସର୍ବଦା ବରଣ କରିବ ।

ପୂଜାସ୍ଥାନେ ଚ ସର୍ବେଷେ ଶ୍ରାଦ୍ଧସ୍ଥାନେ ତଥୈବ ଚ ।
ଉପଯୁକ୍ତ ଚ ସର୍ବେ ବ୍ରାହ୍ମଣାଗ୍ରେ ଚ ପୂଜିତ ।

"ଇତି ମତ୍ସ୍ୟସମ୍ବନ୍ଧିଗୀତନ୍ତ୍ର ଧୃତ ବଚନ, ସର୍ବୋତ୍ତମାନ୍ ଦୈବପୈତ୍ର୍ୟ କାର୍ଯ୍ୟେଷୁ ତେଷାଂ ଗ୍ରହବିପ୍ରାଣାଂ ପୂଜ୍ୟତେତ ଶାସ୍ତ୍ରସିଦ୍ଧତ୍ୱାତ୍ ।"

ଗ୍ରହବିପ୍ରସ୍ତୁ ଆଗ୍ନେର୍ଯ୍ୟା ହୋତା ସାତ୍ତ୍ୱିକ ଏବ ଚ ।
ହରଣ୍ଡିକାଃ ସଦସ୍ୟାଶ୍ଚ କର୍ମଣ୍ୟେତାନ ଯାଜକଃ ।

(ସାଧୁସଜ୍ଜନ ଚନ୍ଦ୍ରୋଦ୍ଧୃତ ବଚନ ।)

ଏହି ସମସ୍ତ ପ୍ରମାଣ ଦ୍ୱାରା ଜଣାଯାଉଅଛି ଯେ, ପ୍ରତ୍ୟେକ କର୍ମରେ ଗ୍ରହବିପ୍ରଙ୍କୁ ବରଣ କରିବା ଶାସ୍ତ୍ରବିହିତ । ଏ ସ୍ଥାନର ଗ୍ରହବିପ୍ରମାନେ ମଧ୍ୟ ପ୍ରତ୍ୟେକ କର୍ମରେ ଜଜମାନର ଦ୍ୱାରସ୍ଥ ହୋଇ ମାଙ୍ଗଲ୍ୟାଦି କାର୍ଯ୍ୟ ସମାଧା କରିଆନ୍ତି । ସୁତରାଂ ସମସ୍ତଙ୍କର ସ୍ମରଣ ରଖିବା ଉଚିତ ଯେ, କର୍ମକର୍ତ୍ତା କ୍ରମବଶତଃ ଗ୍ରହବିପ୍ରଙ୍କୁ ବରଣ ନକଲେ ସମସ୍ତ କର୍ମ ପଣ୍ଡ ହୁଏ ।

## ଦଶମ ଅଧ୍ୟାୟ ।

### ଦୈବଜ୍ଞ ପୁରୋହିତ ହେବାର ଯୋଗ୍ୟ ।

ଦୈବଜ୍ଞଂ ଚ ବେଦବିଦ୍ୟଂ ଜପାର୍ଥଂ ବନ୍ଧୁଚେତସା ।
ପୁରୋହିତଞ୍ଚ କର୍ତ୍ତବ୍ୟଂ ଦୈବଜ୍ଞମୁଦଗୋଦୟଂ ।

(ହରିବଂଶ, ଦେବୀମାହାତ୍ମ୍ୟଂ ।)

ଅର୍ଥ ।—ପ୍ରତିବର୍ଷ ଜପ ହୋମାଦି ରକ୍ଷାର୍ଥେ ଦୈବଜ୍ଞ (ଗ୍ରହବିପ୍ର)ଙ୍କୁ ବରଣ କରିବ । ଶାସ୍ତ୍ରଜ୍ଞ ବିଦ୍ୱାନ ଦୈବଜ୍ଞଙ୍କୁ ପୁରୋହିତ କରିବ ।

ପୁରୋହିତଞ୍ଚ କୁର୍ବୀତ ଦୈବଜ୍ଞମୁଦିତୋଦିତମ୍ ।
ଦଣ୍ଡନୀତ୍ୟାଞ୍ଚ କୁଶଳମଥର୍ବାଙ୍ଗିରସେ ତଥା । (ଯାଜ୍ଞବଲ୍କ୍ୟଃ)

ଅର୍ଥ ।—ଶାସ୍ତ୍ରଜ୍ଞ ବିଦ୍ୱାନ ଦୈବଜ୍ଞ ଏବଂ ଦଣ୍ଡନୀତି ଓ ଅଥର୍ବାଙ୍ଗିରସୋକ୍ତ ଶାନ୍ତ୍ୟାଦି କର୍ମରେ ସୁନିପୁଣ ବ୍ୟକ୍ତିଙ୍କୁ ପୌରୋହିତ୍ୟ କର୍ମରେ ନିଯୁକ୍ତ କରାଇବ ।

ସ୍କନ୍ଦପୁରାଣ ରେବାଖଣ୍ଡ ୧୦୩ ଅଧ୍ୟାୟରେ ଲେଖାଅଛି ଯେ, ପୁତ୍ରାର୍ଥିନୀ ରମଣୀ ବେଣୀ ସଙ୍ଗମରେ ଚତୁର୍ବେଦୋକ୍ତ ରୁଦ୍ରସୂକ୍ତରେ ସ୍ନାନ କରିବ । ଗଣକର୍ଷିକ ଚତୁର୍ବେଦୋକ୍ତ ରୁଦ୍ରସୂକ୍ତ ପାଠକରି ଅଭିଷେକ କର୍ମ ସମ୍ପାଦନ କରିବେ । ଶ୍ଳୋକରେ ଲେଖାଅଛି ;—

ଏକେନ ସାର୍ଦ୍ଧଂ କୁମ୍ଭେନ ଦୀକ୍ଷିତ୍ୟାମଭିଷେଚୟେତ୍ ।
ଦୈବଜ୍ଞେନୈବ ଚୈକେନ ଅଥବା ସାମଗେନ ବା ।
ପଞ୍ଚରତ୍ନସମାଯୁକ୍ତଂ କୁମ୍ଭେ ତତ୍ରୈବ କାରୟେତ୍ । ୧୧୧ ।

ଅର୍ଥ ।—ଏକଜଣ ଦୈବଜ୍ଞ ଅଥବା ସାମବେଦିକ (ଗ୍ରହବିପ୍ର) ଅର୍ଦ୍ଧକୁମ୍ଭ ଦ୍ୱାରା ଦକ୍ଷିଣରେ ଅଭିଷେକ କାର୍ଯ୍ୟ କରାଇବ । ଅଭିଷେକ କୁମ୍ଭରେ ପଞ୍ଚରତ୍ନ ରଖିବାକୁ ହେବ । (ଇତ୍ୟାଦି ।)

ଏହାବ୍ୟତୀତ "ଷଡ୍ଧର୍ମୋତ୍ତର"ରେ ମଧ୍ୟ ଗ୍ରହବିପ୍ର ପୁରୋହିତ ହେବାର ପ୍ରମାଣମିଳେ;—

ଇତି ସ୍ମୃତି ସମ୍ଭବେ ଯଜ୍ଞଃ ସାମ୍ବତ୍ସରଃ ଶୁଭଃ ।
କାଳେନ ଭବେତେନଂ କୁର୍ଯ୍ୟାତ୍ ତତ୍ର ବାଳଂ ତଥୋଦୃମିତେ ।
ଯୋଷଯିତ୍ୱା ଜପ୍ୟଂ ଗୃହ୍ୟ ସାମ୍ବତ୍ସର ପୁରୋହିତୌ ।
ପଶ୍ଚୋତ୍ପୂରକ୍ୟୋତ ତଥାନୃଷିହ୍ୱାଃ
ଦୈବଜ୍ଞ ବାକ୍ୟଂ ନିପୁଣଂ ଚ ଭୂପଃ ।

ସାମ୍ବତ୍ସରସ୍ୟାଥ ସଚିବସ୍ୟମୁଖ୍ୟାଃ
ସଦସ୍ୟମୁଖ୍ୟାଃ ସପୁରୋହିତଶ୍ଚ ।  (ଚତ ଅର୍ଥ ପ୍ରବୋଧ ।)

"ରାଜ୍ୟାଭିଷେକ ସମୟରେ ଦୈବଜ୍ଞ ଅର୍ଥାତ୍ ଅଗ୍ରଣୀ ବ୍ରାହ୍ମଣ ସ୍ୱର୍ଣ୍ଣକୁମ୍ଭସ୍ଥିତ ପୁଣ୍ୟତୀର୍ଥାନୀତ ଜଳ କୁଶମୁଷ୍ଟି ଦ୍ୱାରା ଉତ୍କ୍ଷିପ୍ତ କରି ରାଜାଙ୍କ ଶିରଃପ୍ରଦେଶରେ ଅଭିନିକ୍ଷେପ କରିବେ ଏବଂ "ସୁରାସ୍ତ୍ୱାମଭିଷିଞ୍ଚନ୍ତୁ" ଇତ୍ୟାଦି ମନ୍ତ୍ର ପାଠ କରିବେ । ପରେ ରାଜାଙ୍କ ଲଲାଟୋପରି ପଟ୍ଟ (ରାଜଟୀକା) ଓ ମସ୍ତକରେ ମୁକୁଟ ପିନ୍ଧାଇବେ । ତତ୍ପରେ ଅଭିଷିକ୍ତ ରାଜା ଯେତେବେଳେ ଅଭିମନ୍ତ୍ରିତ ହସ୍ତୀ (ରାଜହସ୍ତୀ)ରେ ଆରୋହଣ କରିବେ, ସେତେବେଳେ ପ୍ରଧାନ ଅମାତ୍ୟ, ଦୈବଜ୍ଞ, ପୁରୋହିତମାନେ ଅନ୍ୟହସ୍ତୀରେ ଆରୋହଣୀ ହେବେ । ତତ୍ପରେ ସମସ୍ତେ ଏକତ୍ରିତ ହୋଇ ରାଜମାର୍ଗରେ ପରିଭ୍ରମଣ କରିବେ ।" ଇତ୍ୟାଦି ବିଷୟ ଧର୍ମଦାସ ସେନଙ୍କ ପ୍ରଣୀତ 'ଭାରତ ରହସ୍ୟ' ୧ମ ଖଣ୍ଡରେ ଲିଖିତଅଛି ।

ଉପରୋକ୍ତ ପ୍ରମାଣମାନଙ୍କରୁ ଉପଲବ୍ଧି ହେଉଅଛି ଯେ ଗ୍ରହବିପ୍ରମାନେ ସମସ୍ତ କର୍ମରେ ବରଣୀ ହୋଇ ପୁରୋହିତକାର୍ଯ୍ୟ କରୁଥିଲେ । ବର୍ତ୍ତମାନ ମଧ୍ୟ ଏତଦ୍ଦେଶର ଗ୍ରହବିପ୍ରମାନେ ଗୋଣ୍ଡଦୋଷ ଶାନ୍ତି ଆଦି ଅନେକ କାର୍ଯ୍ୟରେ ପୁରୋହିତ୍ୟ ହୋଇଅଛନ୍ତି ; ପ୍ରମାଣ ସ୍ୱରୂପ ସର୍ବଦା ପୁରୋହିତରୂପେ ବରିତ ହେଲେ ଶାସ୍ତ୍ରୀୟ ମର୍ଯ୍ୟାଦା ଅକ୍ଷୁଣ୍ଣ ରହିବ ।

## ଦେବତାଙ୍କୁ ପୂଜା କରିବା ଗ୍ରହବିପ୍ରଙ୍କର ଅଧିକାର ।

ପୂର୍ବେ ଲେଖାହୋଇଅଛି ଯେ, ବ୍ରହ୍ମାଂଶ ଓ ସୂର୍ଯ୍ୟାଂଶ ଏହି ଦ୍ୱିବିଧ ବ୍ରାହ୍ମଣ । ଉତ୍କଳୀୟମାନେ ମଠ, ବାଳଭ, ଢବ୍ୟ ଓ ବୈଦିକ ଏବଂ ଅନ୍ୟାନ୍ୟ ବ୍ରାହ୍ମଣମାନେ ଶ୍ରୌମ ନାମରେ ଖ୍ୟାତ । ବୈଦିକ ବ୍ରାହ୍ମଣମାନେ ସର୍ବଦେବଙ୍କ ପୂଜା କରିବା

ବିଷୟ ଏପୁସ୍ତକର ପ୍ରଥମ ଅଧ୍ୟାୟରେ ଲିଖିତ ହୋଇଅଛି । ଏହାଛଡ଼ା ସମସ୍ତ ଦେବତାଙ୍କ ପୂଜା କରିବାର ଅଧିକାର ଗ୍ରହବିପ୍ରଙ୍କର ଥିବାରୁ ତାହା ଏଠାରେ ଉଲ୍ଲେଖ କରାଗଲା ।

ନାଧିକାରସ୍ତୁ(୧) ବିପ୍ରାଣାଂ ଭୌମାନାଂ ଦେବପୂଜନେ ।
ସତ୍ୟଂ ଭରତଶାର୍ଦ୍ଦୂଳ ନାଧିପତ୍ୟେ ବିଶେଷତଃ ।
(ବ୍ରହ୍ମପୁରାଣ, ଉତ୍କଳଖଣ୍ଡ ଦେଖନ୍ତୁ ।)

ଯସ୍ତୁ ପୂଜୟତେ ଦେବାନ୍ ବ୍ରାହ୍ମଣୋ ଦ୍ରବ୍ୟଲୋଭତଃ ।
ସତ୍ୟଂ କୁରୁକୁଳଶ୍ରେଷ୍ଠ ସ ଯାତି ନରକଂ ଧ୍ରୁବମ୍ ।
ଦେବାଳୟେଷୁ ସର୍ବେଷୁ ଅଗ୍ନିକାର୍ଯ୍ୟେ ଚ ସୁବ୍ରତ ।
ଯଃ କୁର୍ଯ୍ୟାତ୍ ଦ୍ରବ୍ୟଲୋଭେନ ଅଧୋଗତିମବାପ୍ନୁୟାତ୍ ।
ଦେବାଳୟେଷୁ ସର୍ବେଷୁ ବର୍ଜୟିତ୍ୱା ଶିବାଳୟମ୍ ।
ଦେବାନାଂ ପୂଜନେ ରାଜନ୍ ଅଗ୍ନିକାର୍ଯ୍ୟେଷୁ ବା ବିଭୋ ।
ଅଧିକାରଃ ସ୍ମୃତୋ ରାଜନ୍ ଭୋଜକାନାଂ ନ ସଂଶୟଃ ।
ପୂଜୟନ୍ତସ୍ତୁ ତେ ଦେବାନ୍ ପ୍ରାପ୍ନୁବନ୍ତି ପରାଂ ଗତିମ୍ ।
(ଭବିଷ୍ୟପୁରାଣ ବ୍ରାହ୍ମପର୍ବ ୨୧୦ ଅଃ)

ଅର୍ଥ ।— ହେ ଭରତଶ୍ରେଷ୍ଠ ! ଭୌମ ବ୍ରାହ୍ମଣମାନଙ୍କର ଦେବପୂଜାରେ ଅଧିକାର ନାହିଁ । ହେ କୁରୁକୁଳଶ୍ରେଷ୍ଠ, ଯେଉଁ ବ୍ରାହ୍ମଣ ଦ୍ରବ୍ୟ-ଲୋଭରେ ବେତନ ଗ୍ରହଣ ପୂର୍ବକ ଦେବପୂଜା କରେ, ସେ ନିଶ୍ଚୟ ନରକଗାମୀ ହୁଏ । ହେ ସୁବ୍ରତ, ସମସ୍ତ ଦେବାଳୟରେ ଓ ଅଗ୍ନିକାର୍ଯ୍ୟରେ ଯେ ବ୍ରାହ୍ମଣ ଦ୍ରବ୍ୟଲୋଭବଶରେ, ସେ ନିଶ୍ଚୟ ଅଧୋଗତି ପ୍ରାପ୍ତହୁଏ । ହେ ରାଜନ୍ ! ଶିବାଳୟ ଛଡ଼ା ସମସ୍ତ ଦେବାଳୟରେ, ଦେବ-ପୂଜାରେ ଏବଂ ଅଗ୍ନିକାର୍ଯ୍ୟରେ ଭୋଜକ (ଗ୍ରହବିପ୍ର)ମାନେ ଅଧିକାରୀ ; ଏଥିରେ କୌଣସି ସନ୍ଦେହ ନାହିଁ । ସେମାନେ ଦେବପୂଜାକରି ମୋକ୍ଷଗତି ପ୍ରାପ୍ତହୁଅନ୍ତି ।

(୧) "ନାଧିକାରୋଽସ୍ତି" ଇତି ପାଠାନ୍ତର ।

ଏତେ ମତ୍ପୂଜନେ ଯୋଗ୍ୟା ପ୍ରତିଷ୍ଠାସୁଚ ସର୍ବଶଃ ।
ଅଧିପାଃ ଭୋଜକାଃ ସର୍ବେନାନ୍ୟେ ବିପ୍ରାଦୟୋ ନୃପ । ଭା୨ଦ ୫

ଅର୍ଥ ।—ସୂର୍ଯ୍ୟ କହୁଅଛନ୍ତି, ମୋର (ସୂର୍ଯ୍ୟଙ୍କର) ପୂଜା ପ୍ରତିଷ୍ଠାଦି କାର୍ଯ୍ୟରେ ଭୋଜକ ବ୍ରାହ୍ମଣମାନେ ଅଧିକାରୀ ଅଟନ୍ତି, ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କର ଅଧିକାର ନାହିଁ ।

ଏଥିରୁ ସ୍ପଷ୍ଟରୂପେ ଜଣାଯାଉଅଛି ଯେ, ସୂର୍ଯ୍ୟ ଦେବତାଙ୍କୁ ତଥା ସମସ୍ତ ଦେବତାଙ୍କୁ ପୂଜା କରିବାର ଅଧିକାର ଭୋଜକ (ଭଗବଦ୍ଧ)ମାନଙ୍କର ରହିଅଛି । ଯେଉଁମାନେ ପୁରୋହିତ କାର୍ଯ୍ୟ କରୁଅଛନ୍ତି, ସେମାନେ ନିଶ୍ଚୟ ଦେବତା ପୂଜା କରିପାରନ୍ତି ଏଥିରେ କିଛି ସନ୍ଦେହ ନାହିଁ । ପ୍ରମାଣ ସ୍ୱରୂପ ଏସ୍ଥାନର ଭଗବଦ୍ଧମାନେ ମଧ୍ୟ ଶାଳଗ୍ରାମ ଓ ଧାତୁନିର୍ମିତ ମହିଷାମର୍ଦ୍ଦିନୀ ମୂର୍ତ୍ତି ଆଦି ବୈଦିକ ଦେବତାଙ୍କର ପୂଜା ସ୍ୱହସ୍ତରେ କରୁଅଛନ୍ତି । (ଏପରିସ୍ଥଳେ ବିଶେଷ ଉଲ୍ଲେଖ କରିବା ଅନାବଶ୍ୟକ ।)

# ଏକାଦଶ ଅଧ୍ୟାୟ ।

## ଭଗବଦ୍ଧଙ୍କୁ ଭୋଜନ କରାଇବାର ଫଳ ।

ଯେଉଁ ଭଗବଦ୍ଧ ବା ଶାକଦ୍ୱୀପୀ ବ୍ରାହ୍ମଣମାନେ ହିନ୍ଦୁ ସମାଜରେ ପୂଜ୍ୟ, ସେମାନଙ୍କୁ ପ୍ରତ୍ୟେକ କର୍ମରେ ଶ୍ରଦ୍ଧା ସହିତ ଭୋଜନ କରାଇବା ଶାସ୍ତ୍ରବିହିତ । ତାହା ସାଧାରଣଙ୍କ ବୋଧାର୍ଥେ କେତୋଟି ପ୍ରମାଣ ନିମ୍ନରେ ପ୍ରଦତ୍ତ ହେଲା ।

ଶ୍ରଦ୍ଧୟା ଭୋଜୟେଦ୍ୟୋପି ବ୍ରାହ୍ମଣାନ୍ ଭକ୍ତିତୋ ନୃପ ।
ଭବ୍ୟାନ୍ ଭୌମାଂଶ୍ଚ ବିଧିବଭାସ୍କରପ୍ରୀତଯେ ପୁମାନ୍ ।
(ଭବିଷ୍ୟପୁ ହେମାଦ୍ରି ।)

ଅର୍ଥ ।—ହେ ନୃପ ! ସୂର୍ଯ୍ୟଦେବଙ୍କର ପ୍ରୀତି ସକାଶେ ଭବ୍ୟବ୍ରାହ୍ମଣ ଓ ଭୌମବ୍ରାହ୍ମଣମାନଙ୍କୁ ଯଥାବିଧି ଭକ୍ତି ଓ ଶ୍ରଦ୍ଧାର ସହିତ ଭୋଜନ କରାଇବ ।

ଭବିଷ୍ୟପୁରାଣ ବ୍ରାହ୍ମପର୍ବ ୬୮ଅଧ୍ୟାୟ ୫ମ ଶ୍ଲୋକରେ ଯାଜ୍ଞବଲ୍କ୍ୟପ୍ରତି ବ୍ରହ୍ମବାକ୍ୟ—

ପ୍ରଥମଂ ଭୋଜକା ଭୋଜ୍ୟାଃ ପୁତ୍ର !(୧) ସ୍ୱବଦୂର୍ଷେଃ ଶତ ।
ତେଷାମ୍ଭାବେ ମନ୍ତ୍ରବଦସ୍ତଥା ବେଦବଦୋ ଦ୍ୱିଜାଃ ।

ଅର୍ଥ । ସର୍ବାଗ୍ରେ ନିଜର ପୁରୋହିତ ସହିତ ଭୋଜକ (ଗ୍ରହବିପ୍ର) ମାନଙ୍କୁ ଭୋଜନ କରାଇବ । ସେମାନଙ୍କ ଅଭାବରେ ମନ୍ତ୍ରବିଦ୍ ଓ ବେଦବିଦ୍ ବ୍ରାହ୍ମଣମାନଙ୍କୁ ଭୋଜନ କରାଇବ ।

ପିତୃନୁଦ୍ଦିଶ୍ୟ ଯଃ ଶ୍ରାଦ୍ଧେ ଭୋଜୟେଦ୍ଭୋଜକାନ୍ ନରଃ ।
ସ୍ୱସ୍ଥାନଂ ସମବାପ୍ନୋତି ଭାସ୍କରସ୍ୟ ମହାତ୍ମନଃ ।
( ଭବିଷ୍ୟପୁରାଣ ବ୍ରାହ୍ମପର୍ବ ୧୮୭ ଅ: ୮୮ )

ଅର୍ଥ ।—ଶ୍ରାଦ୍ଧରେ, ପିତୃ ଉଦ୍ଦେଶ୍ୟରେ ଯେଉଁବ୍ୟକ୍ତି ଭୋଜକ ବ୍ରାହ୍ମଣମାନଙ୍କୁ ଭୋଜନ କରାଇବେ, ସେ ନିଶ୍ଚୟ ସୂର୍ଯ୍ୟଲୋକ ପ୍ରାପ୍ତ ହୁଅନ୍ତି ।

ଦୈବପକ୍ଷୋତ୍ସବେ ଶ୍ରାଦ୍ଧେ ପୁଣ୍ୟେଷୁ ଦିବସେଷୁ ଚ ।
ଭାନୁଂ ସମ୍ପୂଜ୍ୟ ବିଧିବଦ୍ଭୋଜକାନ୍ ଭୋଜୟେଦ୍ଧିତଃ ।
ପିତରଃ ସର୍ବଦେବାନାଂ ସୂର୍ଯ୍ୟମାଶ୍ରିତ୍ୟ ସଂସ୍ଥିତାଃ ।
ପ୍ରୀତେ ସୂର୍ଯ୍ୟେ ଭୁତେ ସର୍ବେ ପ୍ରୀତାଃ ସ୍ୟୁର୍ନାତ୍ର ସଂଶୟଃ ।
ତସ୍ମାଚ୍ଛ୍ରାଦ୍ଧେ ବିଶେଷେଣ ପୁଣ୍ୟେଷୁ ଦିବସେଷୁ ଚ ।

(୧) ଅନ୍ୟଗ୍ରନ୍ଥରେ 'ପୂତ' ସ୍ଥଳେ "ପୁରାଣ" ପାଠାନ୍ତର । ]

ସ୍ୱର୍ଗାଦ୍ୱାପିବାଲ୍ଲୋକାନ୍ ଭୋଜକଂ ଯସ୍ତୁ ଭୋଜୟେତ୍ ।
ସୋଽପି ଯାଂ ଗତିମାପ୍ନୋତି ନ ତାଂ ଯଜ୍ଞ ଶତୈରପି ।
ତସ୍ମାନ୍ମାନ୍ୟଶ୍ଚ ପୂଜ୍ୟଶ୍ଚ ରକ୍ଷଣୀୟଶ୍ଚ ସର୍ବଦା ।
ଭୋଜକଃ କୁରୁଶାର୍ଦ୍ଦୂଳ ! ସୌରେଣ ଗତିମିଚ୍ଛତା ।
ଦତ୍ୱାତୁ ଭୋଜକେ ସୌମ୍ୟଂ ହ୍ୟାସନଂ ସ ପରିଚ୍ଛଦମ୍ ।
ଧାତୁଦନ୍ତମୟଞ୍ଚାପି ରାଜା ଭବତି ଭୂତଳେ ।
ତହଂସୂର୍ଯ୍ୟୋ ଭୋଜକଃ ସୋଽହଂ ଭୋଜକଃ ସୂର୍ଯ୍ୟ ଏବହି ।
ତେନ ଭୋଜକବକ୍ତ୍ରେଷୁ ଦାନମକ୍ଷୟ୍ୟ ମିତ୍ୟପି ।
(ଭବିଷ୍ୟପୁରାଣ ବ୍ରାହ୍ମପର୍ବ ୧୭୨ ଅଃ)

ଅର୍ଥ ।—ଦୈବପର୍ବୋତ୍ସବରେ ଶ୍ରାଦ୍ଧରେ ଓ ପୁଣ୍ୟଦିନରେ ସୂର୍ଯ୍ୟଦେବଙ୍କର ଯଥାବିଧି ଅର୍ଚ୍ଚନା କରି ଭୋଜକବ୍ରାହ୍ମଣମାନଙ୍କୁ ଭୋଜନ କରାଇବ । ପିତୃ ପୁରୁଷମାନେ ସମସ୍ତ ଦେବତାଙ୍କ ମଧ୍ୟରେ ସୂର୍ଯ୍ୟଦେବଙ୍କୁ ଆଶ୍ରୟ କରି ଅବସ୍ଥାନ କରନ୍ତି । ସୂର୍ଯ୍ୟ-ଦେବ ସନ୍ତୁଷ୍ଟ ହେଲେ ସେମାନେ ସନ୍ତୁଷ୍ଟ ହୁଅନ୍ତି । ସେହି ହେତୁରୁ ଶ୍ରାଦ୍ଧରେ ଏବଂ ପୁଣ୍ୟଦିନରେ ଯେଉଁବ୍ୟକ୍ତି ଯତ୍ନପୂର୍ବକ ସ୍ୱର୍ଗବଂଶରୁ ବା ଲୌହବଂଶରୁ ଭୋଜକ ବ୍ରାହ୍ମଣମାନଙ୍କୁ ଭୋଜନ କରାଇଥାଏ, ତଦ୍ୱାରା ଯେଉଁ ଫଳ (ବା ଗତି) ଲାଭହୁଏ, ତାହା ଶତଯଜ୍ଞରେ ସୁଦ୍ଧା ଲାଭ କରି ହୁଏନାହିଁ । ହେ କୁରୁଶ୍ରେଷ୍ଠ ! ତନ୍ନିମିତ୍ତ ସୂର୍ଯ୍ୟଲୋକାଭିଳାଷୀ ବ୍ୟକ୍ତିଙ୍କ ଦ୍ୱାରା ସର୍ବଦା ସମସ୍ତ କାର୍ଯ୍ୟରେ ଭୋଜକ ବ୍ରାହ୍ମଣମାନେ ମାନନୀୟ, ପୂଜ୍ୟ ଓ ରକ୍ଷଣୀୟ । ଭୋଜକ ବ୍ରାହ୍ମଣମାନଙ୍କୁ ଉତ୍କୃଷ୍ଟ ପରିଚ୍ଛଦ ସହିତ ଧାତୁଦନ୍ତମୟ ଆସନ ପ୍ରଦାନ କଲେ, ଭୂମଣ୍ଡଳରେ ରାଜ୍ୟାଧିପତି ହୁଅନ୍ତି । ସୂର୍ଯ୍ୟହିଁ ଭୋଜକ, ଭୋଜକହିଁ ସୂର୍ଯ୍ୟ ; ଏଥିସକାଶ ଭୋଜକ ବକ୍ତ୍ରକୁ ଯାହା ଦିଆଯାଏ, ତାହା ଅକ୍ଷୟ ଦାନ ଅଟେ ।

ଯସ୍ୟ ଭୁଙ୍କ୍ତେ ଭୋଜକସ୍ତୁ ଗନ୍ଧପୁଷ୍ପାଦିନାର୍ଚ୍ଚିତଃ ।
ତସ୍ୟ ଶାନ୍ତିଃ ସ୍ୱୟଂ ଭୁଙ୍କ୍ତେ ପିତରୋ ଦେବତାସ୍ତଥା । ଭାରତେ

ଅର୍ଥ ।—ଗନ୍ଧପୁଷ୍ପାଦି ଦ୍ୱାରା ଅର୍ଚ୍ଚିତ କରି ଭୋଜକମାନଙ୍କୁ ଯେଉଁମାନେ ପ୍ରଦତ୍ତ ଭୋଜ୍ୟ ଭୋଜନ କରାନ୍ତି, ପିତୃଦେବତାମାନେ ସ୍ୱୟଂ ତାହାଙ୍କର ପ୍ରଦତ୍ତଭୋଜ୍ୟ ଭୋଜକମାନଙ୍କ ମୁଖରୁ ଭୋଜନ କରି ଥାଆନ୍ତି ।

ଗ୍ରହାଂଶୋ ବ୍ରାହ୍ମଣୋ ଯସ୍ୟ ଗୃହେ ଯଦି ଭୋଜନମାଚରେତ୍ ।
ତଦନ୍ନଂ ମେରୁତୁଲ୍ୟଂ ସ୍ୟାତ୍ ତୋୟଂ ସାଗରୋପମଂ । ବ୍ରହ୍ମବୈବର୍ତ୍ତ

ଅର୍ଥ ।—ଗ୍ରହାଂଶ ବ୍ରାହ୍ମଣ ଯାହାଙ୍କ ଗୃହରେ ଭୋଜନ କରନ୍ତି, ତାହାଙ୍କର ଅନ୍ନ, ମେରୁ ଓ ଜଳାଶୟ ଦାନ ପ୍ରାପ୍ତ ଫଳଲାଭ କରଏ । ଗ୍ରହବ୍ରାହ୍ମଣଙ୍କୁ ବସ୍ତ୍ର ଓ ଶ୍ରଦ୍ଧା ସହିତ ଭୋଜନ କରାଇଲେ ଲକ୍ଷେ ବ୍ରାହ୍ମଣ ଭୋଜନ କରାଇବା ପ୍ରାପ୍ତ ଫଳଲାଭ ହୁଏ ।

ଜ୍ୟୋତିଷାର୍ଥତତ୍ତ୍ୱମେତତ୍ କୃତ୍ସ୍ନଂ ଜାନାତି ଯୋ ଦ୍ୱିଜଃ ।
ଅଗ୍ରଭୁକ୍ ସ ଭବେଚ୍ଛ୍ରାଦ୍ଧେ ପୂଜିତଃ ପଂକ୍ତିପାବନଃ । ବୃହତ୍ସଂହିତା

ଭାବାର୍ଥ—ଜ୍ୟୋତିଃଶାସ୍ତ୍ରଜ୍ଞ ବ୍ରାହ୍ମଣମାନେ ପଂକ୍ତିଶ୍ରେଷ୍ଠ, ସେମାନଙ୍କୁ ଶ୍ରାଦ୍ଧରେ ଅଗ୍ରେ ଭୋଜନ କରାଇବା କର୍ତ୍ତବ୍ୟ ।

ଏହିସମସ୍ତ ପ୍ରମାଣମାନଙ୍କରୁ ଜଣାଯାଉଅଛି ଯେ, ପ୍ରତ୍ୟେକ କାର୍ଯ୍ୟରେ ଗ୍ରହବିପ୍ରମାନଙ୍କୁ ଭୋଜନ କରାଇବା କର୍ତ୍ତବ୍ୟ । ଏ ଦେଶରେ ମଧ୍ୟ ପ୍ରତ୍ୟେକ କାର୍ଯ୍ୟରେ ଗ୍ରହବିପ୍ରମାନେ ଯଜମାନ ଦ୍ୱାରରେ ଭୋଜନ କରିଥାନ୍ତି (ସ୍ପଷ୍ଟ ଦ୍ରଷ୍ଟବ୍ୟ) । ଏହାର ଅନ୍ୟଥା କଲେ ସମସ୍ତ କିଛି ନିଷ୍ଫଳ ହୁଏ । ଗ୍ରହବିପ୍ରମାନଙ୍କୁ ଭୋଜନ କରାଇଲେ ପିତୃ ଦେବତାମାନେ ନିଜେ ଭୋଜନ କଲା ପରି ତୃପ୍ତିଲାଭ କରନ୍ତି । ଏପରି ଗ୍ରହବିପ୍ରଙ୍କ ଆଳୟରେ ବର୍ଣ୍ଣି-

ଚତୁଷ୍ପଦ୍ ଭୋଜନ କରିବା ପ୍ରଶସ୍ତ ; ଯାହାର ପ୍ରମାଣ, ବ୍ୟବସ୍ଥା ପତ୍ରାଦି ଭାରତର ବିଦ୍ୟାନଗରୀ କାଶୀଧାମର ଓ ବଙ୍ଗର ପଣ୍ଡିତ ମଣ୍ଡଳଙ୍କ ଦ୍ୱାରା ପ୍ରକାଶିତ "ଦୁର୍ଜ୍ଜନଯ୍ୟ ଚପେଟିକା' ଓ 'ଅଗ୍ନୃପୀ ଦର୍ପଣ" ଆଦି ପୁସ୍ତକରେ ପ୍ରଦତ୍ତ ହୋଇଅଛି । ଏ ପୁସ୍ତକର ସ୍ଥାନାନ୍ତରରେ କେବଳ ଦେଶୀୟ ମତାମତ ପ୍ରଦତ୍ତ ହୋଇଅଛି ।

# ଦ୍ୱାଦଶ ଅଧ୍ୟାୟ ।

## ନକ୍ଷତ୍ରସୂଚୀ-ଗଣକ ଓ ଜାତକାଶ୍ରୟ ବ୍ରାହ୍ମଣ ।

ଜ୍ୟୋତିଃଶାସ୍ତ୍ରାଧ୍ୟୟନ କାର୍ଯ୍ୟ ଗ୍ରହବିପ୍ରଙ୍କ ବ୍ୟତୀତ ଅନ୍ୟାନ୍ୟ ବିପ୍ରଙ୍କ ପକ୍ଷରେ ନିନ୍ଦନୀୟ, ପୂର୍ବେ ଏ ବିଷୟର ଉଲ୍ଲେଖ ହୋଇ ଅଛି । ବ୍ରାହ୍ମଣ ଜ୍ୟୋତିଷଶାସ୍ତ୍ର ଆଲୋଚନା କରିବା ଦ୍ୱାରା ନକ୍ଷତ୍ରସୂଚୀ ଗଣକ ସଂଜ୍ଞା ପ୍ରାପ୍ତ ହୋଇଅଛନ୍ତି ଯଥା ;—

ବିପ୍ରଶ୍ଚ ଜ୍ୟୋତିର୍ଗଣନାତ୍ ବେତନାଚ୍ଚ ନିରନ୍ତରଂ ।
ବେଦାଭ୍ୟାସଂ ପରିତ୍ୟଜ୍ୟ ବଭୂବ ଗଣକୋଦ୍ଭବ । ବ୍ରହ୍ମବୈବର୍ତ୍ତ ପୁରାଣ

ଅର୍ଥ ।—ବ୍ରାହ୍ମଣ ବେଦାଭ୍ୟାସ ପରିତ୍ୟାଗ କରି, ନିରନ୍ତର ବେତନ ଗ୍ରହଣ ଓ ଜ୍ୟୋତିଷଶାସ୍ତ୍ର ଆଲୋଚନା କରିବା ଦ୍ୱାରା ଗଣକ ନାମରେ ପରିଚିତ ହୁଅନ୍ତି । (କାରଣ ଜ୍ୟୋତିଃଶାସ୍ତ୍ରାଧ୍ୟୟନ ବ୍ରାହ୍ମଣଙ୍କର କାର୍ଯ୍ୟ ନୁହେଁ ।)

ବ୍ରାହ୍ମଣ ଜ୍ୟୋତିଷଶାସ୍ତ୍ର ଶିକ୍ଷାକଲେ ଯେପରି ନିନ୍ଦନୀୟ, ତଦ୍ରୂପ ଗ୍ରହବିପ୍ର ଜ୍ୟୋତିଷଶାସ୍ତ୍ର ଅଧ୍ୟୟନ ନ କଲେ ନିନ୍ଦନୀୟ ଏବଂ ଜାତିସଂଜ୍ଞା ଲାଭ କରନ୍ତି ଯଥା ;—

ଅବ୍ରତୈର୍ବୈ ଯଃ ଶାସ୍ତ୍ରଂ ଦୈବଜ୍ଞତ୍ୱଂ ପ୍ରପଦ୍ୟତେ ।
ସପଂକ୍ତିଦୂଷକୋ ପାପୋ ଜ୍ଞେୟୋ ନକ୍ଷତ୍ରସୂଚକଃ ॥ ବଶିଷ୍ଠସଂହିତା

ଅର୍ଥ ।—ଯେଉଁମାନେ ଶାସ୍ତ୍ର ବୋଲି କଅଣ ଜାଣନ୍ତି ନାହିଁ ଅଥଚ ଦୈବଜ୍ଞ ବୋଲି ପରିଚୟ ଦଅନ୍ତି ; ସେମାନେ ପଂକ୍ତିକୁ ଦୂଷନ୍ତି । ସେହି ପାପାତ୍ମା ଗଣକଙ୍କୁ ନକ୍ଷତ୍ରସୂଚୀ କହନ୍ତି ।

ଶୂଦ୍ରବିପ୍ର କୁଳରେ ଜନ୍ମ ହୋଇ ଶୂଦ୍ରଗଣକ ଓ ଶୂଦ୍ରଯାଜୀ ଆଦି ନଜାଣିବେ ଯେପରି ନକ୍ଷତ୍ରସୂଚୀ ବା ଜାତପଞ୍ଜା ପ୍ରାପ୍ତ ହୁଅନ୍ତି ; ସେହିପରି ବିପ୍ର (ବ୍ରାହ୍ମଣ) କୁଳରେ ଜନ୍ମଗ୍ରହଣ କରି ବେଦାଧ୍ୟୟନ, ଗାୟତ୍ରୀ ଆଦି ଛାଡି ଶୂଦ୍ରରୀ ପ୍ରକୃତ ବୃତ୍ତି ଅବଲମ୍ବନ କଲେ ସେମାନେ ବୃଷଳ ଆଦି ଜାତନାମରୂପେ ଗଣ୍ୟ ହୋଇ ସ୍ମୃତିମାନରେ ପରିଚିତ ହୁଅନ୍ତି । ମନୁସଂହିତା ୨ୟ ଅଧ୍ୟାୟରେ ଲେଖାଅଛି ;—

ଯୋଽନଧୀତ୍ୟ ଦ୍ୱିଜୋ ବେଦମନ୍ୟତ୍ର କୁରୁତେ ଶ୍ରମଂ ।
ସଜୀବନ୍ନେବ ଶୂଦ୍ରତ୍ୱମାଶୁ ଗଚ୍ଛତି ସାନ୍ୱୟଃ ॥ ୧୬୮ ॥

ଅର୍ଥ ।—ଯେଉଁ ଦ୍ୱିଜ ବେଦ ଅଧ୍ୟୟନ ନକରି ଅନ୍ୟତ୍ର ପରିଶ୍ରମ କରେ, ସେ ଜୀବଦ୍ଦଶାରେ ନିଜର କୁଳସହ ଶୂଦ୍ରତ୍ୱକୁ ପ୍ରାପ୍ତହୁଏ । ଏମନ୍ତ ପରାଶରସଂହିତା ୧୨ଶ ଅଧ୍ୟାୟରେ ଲେଖାଅଛି—

ଅଗ୍ନିକାର୍ଯ୍ୟାତ୍ ପରିଭ୍ରଷ୍ଟାଃ ସନ୍ଧ୍ୟୋପାସନବର୍ଜିତାଃ ।
ବେଦଂଚୈବାନଧୀୟାନାଃ ସର୍ବେ ତେ ବୃଷଳାଃ ସ୍ମୃତାଃ ॥ ୨୯

ଅର୍ଥ ।—ଯେଉଁ ବ୍ରାହ୍ମଣମାନେ ଅଗ୍ନିକାର୍ଯ୍ୟ (ହବନକର୍ମ)ରୁ ଭ୍ରଷ୍ଟ ହୋଇଥାନ୍ତି, ସନ୍ଧ୍ୟା ଓ ଉପାସନା ବର୍ଜିତ ହୋଇଥାନ୍ତି ଏବଂ ବେଦ ଅଧ୍ୟୟନ କରନ୍ତି ନାହିଁ ; ଏହିପରି ବ୍ରାହ୍ମଣଙ୍କୁ "ବୃଷଳ" ବୋଲାଯାଏ । ମନୁ ୮ମ ଅଧ୍ୟାୟରେ ଲେଖାଅଛି ;—

ଗୋରକ୍ଷକାନ୍ ବାଣିଜକାଂସ୍ତଥା କାରୁକୁଶୀଲବାନ୍ ।
ପୌଷ୍ୟାନ୍ ବାର୍ଦ୍ଧୁଷିକାଂଶ୍ଚୈବ ବିପ୍ରାନ୍ ଶୂଦ୍ରବଦାଚରେତ୍ ॥
ଅସ୍ୱାଳକା ମସୀଜୀବା ଦେବଳା ଗ୍ରାମଯାଜକାଃ ।
ଧାବକା ପାଚକାଶ୍ଚୈବ ଷଡେତେ ପତିତା ଦ୍ୱିଜାଃ ॥ ଇତ୍ୟାଦି

ଶୂଦ୍ରଗଣକ—(ଗଣପତି-ଗଣକ ଅର୍ଥାତ୍ ଯେଉଁ ଶୂଦ୍ର ଜ୍ୟୋତିଷ କରୁଥାଏ ତାହାକୁ ଶୂଦ୍ରଗଣକ ବୋଲନ୍ତି। ପୂର୍ବରେ କୌଣସି ଶୂଦ୍ର ଜ୍ୟୋତିଷ କରୁନଥିବ, ସେହିଠାରୁ ଶୂଦ୍ରଗଣକ ବା ନକ୍ଷତ୍ରସୂଚୀ ଗଣକ ନାମରେ ଗୋଟିଏ ବର୍ଣ୍ଣସଙ୍କର ଜାତି ଥିବାର କେତେଗୁଡ଼ିଏ ଗ୍ରନ୍ଥରେ ପ୍ରମାଣ ଅଛି। ସେମାନେ ନକ୍ଷତ୍ର ସୂଚକ ବ୍ୟବସାୟ ବ୍ରାହ୍ମଣୋଚିତ କର୍ମ ନାହିଁ। ଏପରି କି ବାଙ୍ଗରେ ପଣ୍ଡା ପର୍ଯ୍ୟନ୍ତ ଥାଏ ନାହିଁ। ଶୂଦ୍ରଗଣକ ଯେ ବ୍ରହ୍ମବିପ୍ରଠାରୁ ପୃଥକ ତାହା "ପରାଶର ସଂହିତା"ରେ ଉଲ୍ଲେଖ ଅଛି—

ଗ୍ରହବିପ୍ରମୁଖାଦ୍ରାଜା ଶୃଣୁୟାତ୍ ନବପତ୍ରିକାମ୍ ।
ହସ୍ତେ କୃତ୍ୱା ଫଳଂ ପୁଷ୍ପଂ ନ ଶୂଦ୍ରଗଣକାଦ୍ୟତଃ ॥
ଶୁକ୍ଳେ ଦକ୍ଷିଣତୋ ପକ୍ଷେ ବାମତସ୍ତୁ ବିପର୍ଯ୍ୟୟେ ।
ନବପତ୍ରୀପଦାପାଠ୍ୟା ଦୈବଜ୍ଞେନ ତୁ ଧୀମତା ॥
ଚତୁର୍ବର୍ଗେ ଭବେତ୍ ସ୍ନାନାତ୍ ଯତ୍ ଫଳଂ ଲଭତେ ନରଃ ।
ତତ୍ ଫଳଂ ଲଭତେ ନୂନଂ ପତ୍ରିକାଶ୍ରବଣେନ ଚ ॥

ରାଜା ହସ୍ତରେ ଫଳ ପୁଷ୍ପ ଘେନି ଗ୍ରହବିପ୍ରଙ୍କ ମୁଖରୁ ନୂତନ ପଞ୍ଜିକାର ଫଳାଫଳ ଶ୍ରବଣ କରିବେ। ଶୂଦ୍ରଗଣକ ମୁଖରୁ ଶୁଣିବେ ନାହିଁ। ଇତ୍ୟାଦି।

ଏହାଦ୍ୱାରା ଦୁଇପ୍ରକାର ଗଣକ ଥିବାର ସ୍ପଷ୍ଟରୂପେ ଜଣାଯାଉଅଛି। ଏକପ୍ରକାର ଜ୍ୟୋତିଃଶାସ୍ତ୍ରାଧ୍ୟାୟୀ ଗ୍ରହବିପ୍ର, ଅନ୍ୟପ୍ରକାର ଶୂଦ୍ରଗଣକ। ଗଣକର ଯେ କୌଣସି ଅପବାଦ ଶୁଣାଯାଏ, ତାହା ଏହି ନକ୍ଷତ୍ରସୂଚୀ ବା ଶୂଦ୍ରଗଣକ ପ୍ରତି ପ୍ରଯୋଜ୍ୟ, ଗ୍ରହବିପ୍ର ପ୍ରତି ନୁହେଁ।

## ଗୋଟିଏ ନାମରେ ବହୁ ଜାତି ।

ପ୍ରତ୍ୟେକ ଜାତିରେ ଉଚ୍ଚ ଓ ନୀଚ ଅବସ୍ଥା ରହିଅଛି। ଉଚ୍ଚ ନୀଚର ବ୍ୟବହାର ପୃଥକ୍, ସମାନ ନୁହେ। ଯେପରି ଘାଟିଆ ପଣ୍ଡା ପଣ୍ଡିତ ବ୍ରାହ୍ମଣମାନେ କୌଣସିମତେ ଉଚ୍ଚଜାତିର ବ୍ରାହ୍ମଣ ହୋଇ ପାରନ୍ତି ନାହିଁ। ସେହିପରି ନକ୍ଷତ୍ରସୂଚୀ (ଶୂଦ୍ର-

ଗଣକ) କୌଣସିମତେ ଉଚ୍ଚବର୍ଣ୍ଣ ଗଣ୍ୟ ହୋଇ ପାରନ୍ତିନାହିଁ । ଶାସ୍ତ୍ରରେ ଗୋଟିଏ ନାମସଞ୍ଜ୍ଞାରେ ଅନେକ ପ୍ରକାର ଜାତି ଥିବାର ପ୍ରମାଣ ମିଳେ ଏବଂ ସେମାନଙ୍କ ଉତ୍ପତ୍ତି ଭିନ୍ନପ୍ରକାର, ଯଥା ;—

ହିନ୍ଦୁ ସମାଜରେ ବୈଦ୍ୟ ଉତ୍କୃଷ୍ଟ ଜାତି, ଅଥଚ ବୈଦ୍ୟ ନାମରେ ଅନ୍ୟ ନୀଚଜାତି ମଧ୍ୟ ଅଛି । ମାଳବୈଦ୍ୟ (ବେଳା), ଶୁକ୍ଳବୈଦ୍ୟ (ଧୋବା), କଡ଼ବୈଦ୍ୟ (ବାଉରି) ଇତ୍ୟାଦି । ଏମାନେ ବୈଦ୍ୟ ନାମଧାରୀ ହେଲେହେଁ ଜାତି କର୍ମ ଭିନ୍ନପ୍ରକାର । ଚନ୍ଦ୍ର ନାମରେ ଅନେକ ଜାତି ଅଛନ୍ତି, ଯଥା ;—ଅପଲଚନ୍ଦ୍ର, ମୃଗୀଚନ୍ଦ୍ର, ଧୋପାଚନ୍ଦ୍ର, ମାଟିଅଚନ୍ଦ୍ର ଇତ୍ୟାଦି । ଚନ୍ଦ୍ର ବୋଲି କହିଲେ ଯେ, କଳଚନ୍ଦ୍ର, ଧୋପଚନ୍ଦ୍ର, ମାଟିଅଚନ୍ଦ୍ର ପ୍ରଭୃତି ନୀଚଚନ୍ଦ୍ରକୁ କୌଣସିମତେ ଅପଲ (ବା ଅସିଣୀ) ଚନ୍ଦ୍ର ବୋଲି ବୁଝାଯାଇ ପାରେନାହିଁ । ମାଳୀ ଦୁଇପ୍ରକାର, ଫୁଲମାଳୀ ଓ ଭୂଇମାଳୀ (ହାଡ଼ି) । ଫୁଲମାଳୀ ଜାତି ଶୁଦ୍ଧ, ଭୂଇମାଳୀ (ହାଡ଼ି)ଜାତି ନିତାନ୍ତ ନିକୃଷ୍ଟ । କୈବର୍ତ୍ତ ନାମରେ ଦୁଇପ୍ରକାର ଜାତି ଅଛି, ମାହିଷ୍ୟ ଓ ଜାଲିକ ; ଏହାମଧ୍ୟରେ ମାହିଷ୍ୟ କୈବର୍ତ୍ତ ଉତ୍କୃଷ୍ଟ, ଜାଲିକ ସେପରି ଶୁଦ୍ଧ ନୁହେଁ । ବଣିକ୍ ନାମରେ ତିନିପ୍ରକାର ଜାତିଅଛି—ଗନ୍ଧବଣିକ୍, ଶଙ୍ଖବଣିକ୍ ଓ ସୁବର୍ଣ୍ଣବଣିକ୍ । ଏହା ମଧ୍ୟରେ ଗୋଟିଏ ଶ୍ରେଷ୍ଠ । କାୟସ୍ଥ ଦୁଇ-ପ୍ରକାର, କାୟସ୍ଥ ଓ ମାଟିଆ-କାୟସ୍ଥ ; ଏହା ମଧ୍ୟରେ ମାଟିଆ-କାୟସ୍ଥ ନିତାନ୍ତ ନିକୃଷ୍ଟ । ଇତ୍ୟାଦି । ସେହିପରି ଉଚ୍ଚବର୍ଣ୍ଣ ଗଣକ ଓ ନକ୍ଷତ୍ରସୂଚୀ (ବା ଶୂଦ୍ର) ଗଣକ ଏକବୋଲି ଭାବିବ ନାହିଁ । ସୁତରାଂ ପ୍ରତ୍ୟେକ ଜାତିରେ ଉଚ୍ଚ, ନୀଚ ହୋଇଛି । ଏହିସମସ୍ତ ବିଷୟ ନ ଜାଣି ନିର୍ବୋଧମାନେ ହିନ୍ଦୁ ସମାଜରେ ମହା-ଅନର୍ଥ ଉତ୍ପାଦନ କରୁଥାନ୍ତି । ଏହା ନିନ୍ଦିତ କାର୍ଯ୍ୟ ଅଟେ ।

# ତ୍ରୟୋଦଶ ଅଧ୍ୟାୟ ।

## ଉତ୍କଳରେ କୋଣାର୍କ ସମ୍ପ୍ରଦାୟ ଉଦବ୍ୟଙ୍କର ବାସସ୍ଥାନ ।

ଏ ପୁସ୍ତକର ଚତୁର୍ଥ ଅଧ୍ୟାୟରେ ଉଲ୍ଲେଖ ହୋଇଅଛି ଯେ, "କୋଣାର୍କ" ସମ୍ପ୍ରଦାୟ ଶାକଦ୍ୱୀପୀ ବ୍ରାହ୍ମଣମାନେ ଓଡ଼ିଶାରେ ବାସସ୍ଥାପନ କରି ରହିଥିଲେ, ସେମାନଙ୍କର ସଂକ୍ଷିପ୍ତ ପରିଚୟ ଏଠାରେ ପ୍ରଦତ୍ତ ହେଲା ।

କୋଣାର୍କା ଯତ୍ରଗାସ୍ତେ ସୁବିମଳମନସଃ ସନ୍ତି ଯେଽନ୍ତଃ ସମୁଦ୍ରଂ
କୋଣାର୍କଂ ପୂଜୟନ୍ତୋ ମୁନିସୁରନିକରୈର୍ନିତ୍ୟାରୂଢ଼ୀର୍ଯ୍ୟମାଣାଃ
ସନ୍ମାର୍ଗୋତ୍ପନ୍ନନିଷ୍ଠାଃ ସ୍ୱସ୍ତିହୃଦ ଘଉଠଂ ଚନ୍ଦ୍ରମାନାସ୍ତ ଝଢ଼ାଂ
ବିଖ୍ୟାତାସ୍ତେ ଧରଣ୍ୟାଂ ଚନ୍ଦ୍ରବିମଳଯଶଶ୍ଚନ୍ଦ୍ରଚୂଡ଼ାର୍ଚ୍ଚନିଷ୍ଠାଃ ।୮।

( 'ମଗବଂଶୀ' ତତ୍ର ଚତୁର୍ଥୋଲ୍ଲାସ । )

ଅର୍ଥ ।— କୋଣାର୍କ ମଗବ୍ରାହ୍ମଣଙ୍କ ମଧ୍ୟରେ ସମସ୍ତେ ଶ୍ରେଷ୍ଠତ୍ୱ ଲାଭ କରିଥିଲେ । ଏମାନେ ସମୁଦ୍ରୋପକଣ୍ଠେ ବାସ ସ୍ଥାପନ କରିଥିଲେ, ଏମାନଙ୍କର ଅନ୍ତଃକରଣ ଅତ୍ୟନ୍ତ ନିର୍ମଳ ଥିଲା । ଦେବଗଣ ଓ ଋଷିଗଣ କୋଣାର୍କର ପୂଜା କରୁଥିଲେ । କୋଣାର୍କ ସମ୍ପ୍ରଦାୟ (ମଗ)ମାନେ ଉତ୍ତମ ଓ ସଦାଚାରର ଅନୁବର୍ତ୍ତୀ ଥିଲେ । ଏମାନେ ଭଗବାନ ଚନ୍ଦ୍ରଶେଖରଙ୍କର ଅର୍ଚ୍ଚନାରେ ନିବିଷ୍ଟଥିଲେ ଏବଂ ଯଶଃପ୍ରଭାରେ ପୃଥିବୀର ଦିଗସ୍ଥାନ ଅଲୋକିତ ହୋଇଥିଲା ।

"ସାମ୍ବପୁରାଣରେ କୋଣାର୍କ ମାହାତ୍ମ୍ୟ ପ୍ରସଙ୍ଗରେ ଶାକଦ୍ୱୀପୀ ବ୍ରାହ୍ମଣଙ୍କ ଆଗମନ କଥା ସବିସ୍ତର ବର୍ଣ୍ଣିତ ହୋଇଅଛି । ଖ୍ରୀଷ୍ଟୀୟ ଏକାଦଶଶତାବ୍ଦୀ ପ୍ରାରମ୍ଭରେ ଅଲବିରୁଦାନ ସାମ୍ବପୁରାଣର ଉଲ୍ଲେଖ କରିଅଛନ୍ତି । ଏହି ସାମ୍ବପୁରାଣ ପ୍ରାଚୀନଶାସ୍ତ୍ର, ଏଥିରେ କୋଣାର୍କ ନାମକ ସୂର୍ଯ୍ୟମୂର୍ତ୍ତି ମାହାତ୍ମ୍ୟ ବର୍ଣ୍ଣିତଥିବାସ୍ଥଳେ

ଅନୁମିତ ହୁଏ ଏକାଦଶ ଶତାବ୍ଦୀ ପୂର୍ବରୁ ଉତ୍କଳରେ ଶାକଦ୍ୱୀପୀ ବ୍ରାହ୍ମଣମାନେ ପଦାର୍ପଣ କରିଥିଲେ ତହିଁରେ ସନ୍ଦେହ ନାହିଁ । ଦୁଃଖର ବିଷୟ ବର୍ତ୍ତମାନ ପ୍ରାଚୀନ କୀର୍ତ୍ତି ବିଲୁପ୍ତ ହୋଇଅଛି ।

ବର୍ତ୍ତମାନ ଐତିହାସିକ କୋଣାର୍କ ମନ୍ଦିର ଭଗ୍ନାବସ୍ଥାରେ ରହିଅଛି, ମନ୍ଦିରର ମୁଖଶାଳାରେ ଖଣ୍ଡିଏ ସୁବୃହତ ପ୍ରସ୍ତରରେ ଅତି ଅଦ୍ଭୁତ ନୈପୁଣ୍ୟ ସହକାରେ ଖୋଦିତ ନବଗ୍ରହ ମୂର୍ତ୍ତି ବସିଛି । ଏଣୁ ନବଗ୍ରହ ମନ୍ଦିର ବୋଲି ଓଡ଼ିଶା ତଥା ଭାରତରେ ବିଖ୍ୟାତ । ଏହା ପୁରୀଠାରୁ ୧ କୋଶ ଦୂରରେ ସମୁଦ୍ରତଟର ଅଦୂରରେ ବିରାଜିତ । ଏହା ହିଁ ସୁପ୍ରସିଦ୍ଧ କୋଣାର୍କ ସୂର୍ଯ୍ୟମନ୍ଦିର ।

ବର୍ତ୍ତମାନ [illegible] ଓଡ଼ିଶାରେ କେଉଁ ସକଳ ସମୟରେ କ୍ଷତ୍ରିୟମାନେ ରାଜତ୍ୱ କରୁଥିଲେ । ପୂର୍ବକାଳରେ ଇନ୍ଦ୍ରଦ୍ୟୁମ୍ନ ନାମକ ରାଜାଙ୍କର ସମସ୍ତ ଉତ୍କଳ ପ୍ରଦେଶ ଶାସନାଧୀନରେ ଥିଲା ଏବଂ ତାଙ୍କର ସୀମା ସୋଣଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ( ଉତ୍କଳଖଣ୍ଡ ୭ମ ଅଧ୍ୟାୟ ଦ୍ରଷ୍ଟବ୍ୟ । ) ଶ୍ରୀକ୍ଷେତ୍ରଧାମରେ ବାସ କରିବା ନିମିତ୍ତ ଏକସମୟରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଅତ୍ୟନ୍ତ ପଣ୍ଡିତ ସହିତ ବ୍ରହ୍ମଦେବ କହୁଅଛନ୍ତି—

ଜ୍ୟୋତିର୍ବିଦୋ ନୃତ୍ୟବିଦୋ ଦଣ୍ଡନୀତୌ ପ୍ରବୀଣକାଃ ।
ନୃତ୍ୟବାଦ୍ୟକବାଦକାଶ୍ଚ ତତ୍ତ୍ୱଜ୍ଞାଶ୍ଚ ସୁବୁଦ୍ଧୟଃ । ୧୬ ।

( ଉତ୍କଳଖଣ୍ଡ ଦ୍ୱାଦଶ ଅଧ୍ୟାୟ । )

ଅର୍ଥ ।—ଜ୍ୟୋତିର୍ବିଦ୍ ପଣ୍ଡିତମାନେ, ନୃତ୍ୟଜ୍ଞ ଭଟ୍ଟମାନେ, ଦଣ୍ଡନୀତିରେ ପ୍ରବୀଣ କର୍ମଚାରୀମାନେ ଓ ନୃତ୍ୟ-ଗୀତ-ବାଦ୍ୟରେ ଅଭିଜ୍ଞ ବାଦ୍ୟକାରମାନେ ଶ୍ରୀକ୍ଷେତ୍ରକୁ ଗମନ କରି ସେହି ସ୍ଥାନରେ ବାସସ୍ଥାପନ କରନ୍ତୁ । ( ରାଜାଙ୍କର ଆଦେଶ ପାଇବା ମାତ୍ରକେ ସମସ୍ତେ ଆସି ଶ୍ରୀକ୍ଷେତ୍ରରେ ବାସସ୍ଥାପନ କରି ରହିଲେ । )

ସେହି ସମୟରୁ ଶ୍ରୀକ୍ଷେତ୍ରରେ ତଥା ଓଡ଼ିଶାର ନାନା ଅଂଶରେ ଗ୍ରହବିପ୍ରମାନେ ବିସ୍ତାର ଲାଭ କରିଥିଲେ । ଏପରି ରାଜା ଅବନ୍ତୀନଗରରୁ ଉଠିଆସି ଶ୍ରୀକ୍ଷେତ୍ରଧାମରେ ରହିଥିଲେ ।

ଏହିସମୟରେ ରାଜାଙ୍କର ଅସୁସ୍ଥତା ହେବାରୁ ଲେଖାଅଛି;—

ନବଗ୍ରହ ମଖାନ୍ତେତୁ ଗ୍ରହକୁମ୍ଭେଣ ସେଚନଃ ।
ଗ୍ରହାଣାଂ ଦୌଃସ୍ଥ୍ୟନାଶାୟ ସୌସ୍ଥ୍ୟସ୍ୟାପି ବିବୃଦ୍ଧୟେ ।
ଜ୍ୟୋତିଃଶାସ୍ତ୍ରୋଦିତୈର୍ମନ୍ତ୍ରୈ ର୍ଦୈବଜ୍ଞ ବିପ୍ରଚୋଦିତୈଃ ।
ତତୋ ମାଙ୍ଗଲ୍ୟକେଳପଥ୍ୟବିଧାନମୁପଚକ୍ରମେ । (ଉତ୍କଳଖଣ୍ଡ)

ଅର୍ଥ ।—ନୃପତି ଗ୍ରହମାନଙ୍କର ଦୌଃସ୍ଥ୍ୟନାଶ ନିମନ୍ତେ ସୁସ୍ଥତା ଅଭିବୃଦ୍ଧି ଆଶାରେ ନବଗ୍ରହଯାଗ (ଗ୍ରହଶାନ୍ତି) ହେବା ପରେ ଗ୍ରହକୁମ୍ଭସ୍ଥିତ ଜଳଦ୍ୱାରା ଅଭିଷିକ୍ତ ହେଲେ । ଦୈବଜ୍ଞ-ମାନେ ବିପ୍ରମତେ ଜ୍ୟୋତିଃଶାସ୍ତ୍ରୋକ୍ତ ମନ୍ତ୍ରଦ୍ୱାରା ମଙ୍ଗଳକୃତ୍ୟ ସମାଧା କରିଥିଲେ ।

ଏଥିରୁ ଜଣାଯାଉଅଛି ଯେ, ପ୍ରାଚୀନକାଳରୁ ଓଡ଼ିଶାରେ ଗ୍ରହବିପ୍ରମାନଙ୍କର ବାସସ୍ଥାନ ଥିଲା. ଓଡ଼ିଶାସ୍ଥ ଗ୍ରହବିପ୍ରମାନେ ଗ୍ରହଯାଗ କରୁଥିଲେ ଏବଂ ପୁରୋହିତରୂପେ ବରଣ ହେଉଥିଲେ । ଏ ଦେଶର ଦୈବଜ୍ଞମାନେ ମଧ୍ୟ ଅନେକ କର୍ମରେ ପୁରୋହିତ କାର୍ଯ୍ୟ କରୁଅଛନ୍ତି ।

ବର୍ତ୍ତମାନ ସମସ୍ତ ଉତ୍କଳ ପ୍ରଦେଶରେ ଯେ କେତେ ଗ୍ରହବିପ୍ର ଅଛନ୍ତି, ସେମାନଙ୍କ ନାମଧାମ ସଂଗ୍ରହ କରିବା ପର୍ଯ୍ୟବେକ୍ଷଣାସ୍ତେ କଠିନ ଏବଂ ବହୁସମୟ ସାପେକ୍ଷ । କେହି ବାଇଦାନଙ୍କମତେ ମେଦିନୀପୁର ଓଡ଼ିଶା ଅନ୍ତର୍ଗତ ଉତ୍ତରଦେଶ ବୋଲି ପରିଚିତ । ବର୍ତ୍ତମାନ ମେଦିନୀପୁର ଗ୍ରହବିପ୍ରମାନେ ଧନୀ, ମାନୀ, ବିତ୍ତଭୋଗୀ ଏବଂ ଜ୍ୟୋତିଃଶାସ୍ତ୍ରରେ ବିଚକ୍ଷଣ ପଣ୍ଡିତ ଅଛନ୍ତି । ଓଡ଼ିଶାରୁ

ଅନେକ ଗ୍ରହବିପ୍ରମାନେ ଯାଇଁ ବଙ୍ଗରେ ବାସ କରିଅଛନ୍ତି ଏବଂ ବଙ୍ଗରୁ ଆସି ଓଡ଼ିଶା ମଧ୍ୟରେ ରହିଅଛନ୍ତି ।

ଓଡ଼ିଆ ଜ୍ୟୋତିଷ ମୁକୁନ୍ଦ ଅଗ୍ରଶର୍ମାଙ୍କ ବାସସ୍ଥାନ ସତ୍ୟବାଦୀଠାରେ ଥିଲା । ତାଙ୍କର ଗୋଟିଏ ପୁତ୍ର ଜନ୍ମିଥିଲେ, ୧ମ ନନ୍ଦରାମ, ୨ୟ ରଘୁନାଥ, ୩ୟ ଜନଦରାମ ଓ ୪ର୍ଥ ପରଶୁରାମ । ନନ୍ଦରାମ ଓ ରଘୁନାଥ ସ୍ୱଗ୍ରାମରେ ରହିଲେ, ଜନଦରାମ ଓଡ଼ିଶାରୁ ଯାଇ ବଙ୍ଗ ପ୍ରଦେଶ ମେଦିନୀପୁର ଜିଲ୍ଲାରେ ବାସସ୍ଥାପନ କରି ମହିଷାଦଳ ରାଜାଙ୍କର ଜ୍ୟୋତିଷ ପଣ୍ଡିତ ହୋଇଥିଲେ । ମହିଷାଦଳ ରାଜା ଜନଦରାମଙ୍କର ଜ୍ୟୋତିଷ ଗଣନାରେ ସନ୍ତୁଷ୍ଟ ହୋଇ ତାଙ୍କୁ ବହୁ ଭୂସମ୍ପତ୍ତି ପ୍ରଦାନ କରିଥିଲେ । ଏ ବ୍ୟକ୍ତି ମେଦିନୀପୁର ଜିଲ୍ଲା ଗ୍ରହବିପ୍ର ସମାଜର ଆଦିବ୍ୟକ୍ତି ଏବଂ ପ୍ରଥମ ବସତିସ୍ଥାପକ ବୋଲି ପରିଚିତ । ବର୍ତ୍ତମାନ ଜନଦରାମଙ୍କ ପୁତ୍ରମାନେ ଉକ୍ତ ବାସ୍ତୁଭୂମିରେ ରହି ଜୀବନ ଯାପନ କରୁଅଛନ୍ତି । ଏହିପରି ଓଡ଼ିଶାରୁ ଅନେକ ଜ୍ୟୋତିଷ ଯାଇ ବଙ୍ଗରେ ପ୍ରଖ୍ୟାତ ଜ୍ୟୋତିଷ ହୋଇଅଛନ୍ତି ।

ମହାନ୍ ପଣ୍ଡିତ ଶତାନନ୍ଦ ଆଚାର୍ଯ୍ୟ ଓଡ଼ିଶାର ଗ୍ରହବିପ୍ର କୁଳରେ ଜନ୍ମଗ୍ରହଣ କରିଥିଲେ । ଏ ବ୍ୟକ୍ତି ୧୦୨୧ ଶକରେ (ଗ୍ରହବିପ୍ର କୁଳୋଦ୍ଭବ) ବରାହମିହିରଙ୍କ କୃତ 'ପଞ୍ଚସିଦ୍ଧାନ୍ତିକା' ଗ୍ରନ୍ଥର ସାର ସଙ୍କଳନ କରି ଉତ୍କଳରେ "ଭାସ୍ୱତୀ" ନାମକ ଗ୍ରନ୍ଥ ରଚନା କରିଥିଲେ । ବର୍ତ୍ତମାନ "ଭାସ୍ୱତୀ" ଗ୍ରନ୍ଥ ଅନୁଯାୟୀ ପଞ୍ଜିକା ଗଣନା ହେଉଅଛି । ଏହିପରି ଅନେକ ବିଚକ୍ଷଣ ପଣ୍ଡିତ ଓଡ଼ିଶାର ଗ୍ରହବିପ୍ର କୁଳରେ ଜନ୍ମଗ୍ରହଣ କରି ଅନେକ ଗ୍ରନ୍ଥ ରଚନା କରି ଯାଇଅଛନ୍ତି, କେତେକ ସ୍ୱଦେଶ ବିଦେଶରେ ପ୍ରକାଶିତ ହୋଇଅଛି । କେତେକ ଗ୍ରନ୍ଥର ସନ୍ଧାନ ପର୍ଯ୍ୟନ୍ତ ମିଳୁନାହିଁ ।

ଓଡ଼ିଶାର ପ୍ରାଚୀନକୀର୍ତ୍ତିମଧ୍ୟରେ ଗୋଟିଏ କୀର୍ତ୍ତିସ୍ତମ୍ଭ କୋଣାର୍କ ମନ୍ଦିର । ଗଙ୍ଗାବଂଶୋଦ୍ଭବ ନରସିଂହ ଦେବ ୧୨୫୨ ଖ୍ରୀଃରେ

ଏତଦ୍‌ସମସ୍ତ ଅଲୋଚନା କରିବାଦ୍ୱାରା ଜଣାପଡ଼ୁଅଛି ଯେ, ଉତ୍କଳରେ ଛତ୍ରବଂଶମାନେ ପୂର୍ବକାଳରୁ ବାସସ୍ଥାପନ କରି ରହିଥିଲେ । ବର୍ତ୍ତମାନ ମଧ୍ୟ ଓଡ଼ିଶାର ବହୁତ ସ୍ଥାନରେ ବାସସ୍ଥାପନ କରି ରହିଅଛନ୍ତି । କିନ୍ତୁ ଦୁଃଖର ବିଷୟ ଏତଦ୍ଦେଶର ଦକ୍ଷିଣାଂଶରେ ରୂପାନ୍ତପାଠ ଘଟିଅଛି ।

ଅନ୍ୟୁନ ତିନିଶତାଧିକ ବର୍ଷ ପୂର୍ବରୁ ଏନଗରର ଜ୍ୟୋତିର୍ବିଦମାନେ ଧନୀ, ମାନୀ, ଗୁଣିବ୍ୟକ୍ତି ଥିବାର ପ୍ରମାଣ ମିଳେ । ଏଠାରେ କେବଳ ଐତିହାସିକ ବିଷୟଟି ଉଲ୍ଲେଖକଲୁଁ, 'ଓଡ଼ିଶା ଇତିହାସ' ଏବଂ 'ବାଲେଶ୍ୱର' ନାମକ ପୁସ୍ତକରେ ଏନଗରର ଅନ୍ୟାନ୍ୟସ୍ଥାନ ବର୍ଣ୍ଣନାରେ ବଟେଶ୍ୱର ଗ୍ରାମର କଥା ଲେଖାଅଛି । "ବଟେଶ୍ୱର ଗ୍ରାମନିବାସୀ ଜନୈକ ଜ୍ୟୋତିଷ (ଛତ୍ରବଂଶ) ଦୁର୍ଗାପୂଜା ଓ କାଳୀପୂଜା ଆରମ୍ଭ କରିଥିଲେ । ଏହା ବାଲେଶ୍ୱର ମଧ୍ୟରେ ସର୍ବାପେକ୍ଷା ପ୍ରାଚୀନ ପୂଜା । ଅଦ୍ୟ ତାଙ୍କ ବଂଶଧରମାନେ ପୂର୍ବବତରେ ପୂଜା କରି ଆସୁଅଛନ୍ତି ।" ଉକ୍ତ ବଂଶଧର ଶ୍ରୀଯୁକ୍ତ କୃତିବାସ ଗ୍ରହାଚାର୍ଯ୍ୟ ଜ୍ୟୋତିର୍ଭୂଷଣ ବର୍ତ୍ତମାନ ବାଲେଶ୍ୱର ରାଜବାଟୀର ଜ୍ୟୋତିଷ-ପଣ୍ଡିତ ଅଟନ୍ତି । ଏହାଙ୍କର ପୂର୍ବେ ମରହଟ୍ଟା ପ୍ରାପ୍ତ ଅନେକ ଦେବୋତ୍ତର, ବ୍ରହ୍ମୋତ୍ତର ଭୂସମ୍ପତ୍ତି ଥିଲା. କାଳକ୍ରମେ କ୍ଷୟପ୍ରାପ୍ତ ହୋଇ ବର୍ତ୍ତମାନ ଅବଶିଷ୍ଟ କେତେକାଂଶ ରହିଅଛି । ଏହିପରି ଅନ୍ୟ ନଗରର ପ୍ରତ୍ୟେକ ଛତ୍ରବଂଶମାନଙ୍କର ଦେବୋତ୍ତର, ବ୍ରହ୍ମୋତ୍ତର କିଛିକ ନିଦର୍ଶନ ମାତ୍ର ରହିଅଛି । ଏହା ପୂର୍ବପୁରୁଷମାନଙ୍କ କୀର୍ତ୍ତି ।

( ଅଧିକ ଛତ୍ରବଂଶଙ୍କ ସମ୍ବନ୍ଧରେ ମତାମତ ଆଦି ଅନେକ ବିଷୟ ସଂଗୃହୀତ ହୋଇଅଛି, ଅସୁବିଧା ବଶତଃ ପରେ ପୁସ୍ତକାକାରରେ ପ୍ରକାଶିତ ହେବ । )



ସମାପ୍ତ ।

# ବିଜ୍ଞାପନ ।

ଜ୍ୟୋତିର୍ବିଦମାନେ ଏକସମୟରେ ଶାସ୍ତ୍ରଜ୍ଞ ଭୂପତି ପ୍ରଭୃତି ଦ୍ୱାରା ସମ୍ମାନରେ ଶ୍ରେଷ୍ଠ ଆସନ ଲାଭକରି "ଗ୍ରହବିପ୍ର ଦ୍ୱିଜଶ୍ରେଷ୍ଠ" ବୋଲି ଖ୍ୟାତ ହୋଇଥିଲେ । ଦୁଃଖର ବିଷୟ ଅଧୁନା ସେହି ଜ୍ୟୋତିର୍ବିଦ୍ ସମ୍ପ୍ରଦାୟର ବଂଶଧରମାନେ ଶିକ୍ଷାର ଅଭାବରୁ ଘୋର ଦାରିଦ୍ର୍ୟ ଦ୍ୱାରା ପ୍ରପୀଡ଼ିତ ହୋଇ ପୂର୍ବଗୌରବ ବିସ୍ମରଣ ହୋଇଅଛନ୍ତି । ଉତ୍କଳରେ ଜ୍ୟୋତିର୍ବିଦ୍ ଗ୍ରହବିପ୍ର-ମାନଙ୍କର ନାମ, ବାସସ୍ଥାନ, ବଂଶାବଳୀ ଆଦି ଜାଣିବାର ଉପାୟ ନାହିଁ । ଆମ୍ଭମାନଙ୍କର ଜନ୍ମସ୍ଥଳ ଉତ୍ତରାଂଶରେ ଥିବାରୁ ଅନ୍ୟତ୍ର ବଂଶାବଳୀ ଆମ୍ଭମାନଙ୍କୁ ଅଗୋଚର । ବର୍ତ୍ତମାନ ପ୍ରଧାନ ଉଦ୍ଦେଶ୍ୟ ଏହିଯେ, ଉତ୍କଳୀୟ ଜ୍ୟୋତିର୍ବିଦ୍ ଗ୍ରହବିପ୍ର-ମାନଙ୍କର ବଂଶାବଳୀ ଏକତ୍ରରେ ପୁସ୍ତକାକାରରେ ପ୍ରକାଶିତ କରିବା ; ଏନିମନ୍ତେ ପ୍ରତ୍ୟେକ କୁଳପଞ୍ଜୀ, ବଂଶାବଳୀ ସହିତ "ଗ୍ରହବିପ୍ର କୁଳବିସ୍ତର" ସଂଗୃହୀତ ହେଉଅଛି । ଆଶାକରୁଁ ପ୍ରତ୍ୟେକ ଜ୍ୟୋତିର୍ବିଦ୍‌ମାନେ ବିଜ୍ଞାପିତ ହେବା ମାତ୍ରେ ସ୍ୱ ସ୍ୱ ଗୋତ୍ର, ବଂଶାବଳୀ ଏବଂ ବିଖ୍ୟାତ ବ୍ୟକ୍ତିଙ୍କ ସଂକ୍ଷିପ୍ତ ଜୀବନୀ ଆଦି ଲେଖି ନିମ୍ନଲିଖିତ ଠିକଣାରେ ପଠାଇବେ । 'କୁଳବିସ୍ତର' ଯଥାଶୀଘ୍ର ପ୍ରକାଶିତ ହେବ ।

ଶ୍ରୀ ଗୀତାନାଥ ଆଚାର୍ଯ୍ୟ
ଦେଭାମାଗଡ଼ିଙ୍ଗା, ବାଲେଶ୍ୱର ।

ଶ୍ରୀ କୃତ୍ତିବାସ ଜ୍ୟୋତିର୍ଭୂଷଣ
ବଟେଶ୍ୱର, ବାଲେଶ୍ୱର ।